# ମୃଗୟା ।

( ସିନ୍ଧୁତଥ ନାଟକ )

କବିଚନ୍ଦ୍ର ଶ୍ରୀ କାଳୀଚରଣ ପଟ୍ଟନାୟକଙ୍କ ପ୍ରଣୀତ

ଓ

ପ୍ରକାଶିତ—

ମୟୂରଭଞ୍ଜ ଷ୍ଟେଟସ୍ଥ ଶ୍ରୀମାନ୍ ପ୍ରତାପଚନ୍ଦ୍ର ଭଞ୍ଜ ଦେଓ

ବାହାଦୂରଙ୍କ ଶୁଭ ତିଳକଲଗ୍ନ ଉପଲକ୍ଷେ

ଅଭିନୀତ

ପ୍ରଥମ ଅଭିନୟ ରଜନୀ ତା ୩୦।୩।୧୯୨୬ ବାରିପଦା ।

ଅଭିନବ ସଂସ୍କରଣ ।


**PRINTED BY P. C. DAS,**
AT THE SHAKTI PRESS,

**PURI.**

*The 1st June 1927.*


ମୂଲ୍ୟ ଦଶଅଣା ।



ପରମାରାଧ୍ୟ

ସ୍ୱର୍ଗୀୟ

ପିତୃଦେବଙ୍କ

ପବିତ୍ର

ସ୍ମୃତିରେ

ଉତ୍ସର୍ଗୀକୃତ ।

ତବ ଆଶୀର୍ବାଦ ଲିପ୍ସୁ,

କାଳୀ,

# ନିବେଦନ ।

—○*○—

ମୃଗୟା—ଦଶରଥଙ୍କର ନୈଶ ମୃଗୟା ବା ବାଳକ ସିନ୍ଧୁବଧ । ନାଟକଟି ପ୍ରଥମେ ବାରିପଦାରେ ଶ୍ରୀମାନ୍ ଶ୍ରେଷ୍ଠରାୟ ସାହେବଙ୍କ ଦଳରେ ଅଭିନୀତ ହୋଇଥିଲା । ସଂପ୍ରତି ସାମାନ୍ୟ କେତେକ ପରିବର୍ତ୍ତନ ସହ ନାଟକଖଣ୍ଡି ଉତ୍କଳର କାବ୍ୟ ନାଟକସ୍ନେହୀମାନଙ୍କ ହାତରେ ଦେଲି । ଇତିପୂର୍ବେ 'ଶକୁନ୍ତଳା' ନାଟକ ବାହାରି ଯାଇଛି । ତହିଁରେ ଭାବରଙ୍ଗୀ ପ୍ରଦର୍ଶନ କାର୍ଯ୍ୟାଂଶରେ କଠିନ ସତ୍ୟ ମାତ୍ର ପ୍ରବୀଣ ଚିତ୍ରକର ହାତରେ ସେଗୁଡ଼ିକ ଯେ ଅତି ସୁନ୍ଦରଭାବେ ଫୁଟି ଉଠିବ ଏଥିରେ ସନ୍ଦେହ ନାହିଁ । ମୁଁ ଶୁଣିପାରିଛି କେତେକେ 'ଶକୁନ୍ତଳା' ଦେଖି ଅଭିନୀତ କରାଇବାକୁ ଶଙ୍କିତ, ମାତ୍ର କାର୍ଯ୍ୟତଃ ବା ଫଳତଃ ତାହାନୁହେ । ସାମାନ୍ୟ ଚେଷ୍ଟାରେ କାର୍ଯ୍ୟ ଫଳବତ ହେବ କିନ୍ତୁ ତାହା ବର୍ତ୍ତମାନ କେତେକ ସ୍ଥଳରେ ତଥା କଥିତ ନାଟକ ଦଳର 'ଲୀଳା' ପରି ହେଲେ ଅବଶ୍ୟ ସେମାନେ 'ଶକୁନ୍ତଳା' ଅଭିନୀତ କରିବାକୁ ଯାଇ ହାସ୍ୟାସ୍ପଦ ହେବେ । ଏଥିରେ ଆଉ ଉପାୟ ନାହିଁ । ଯାହାହେଉ "ମୃଗୟା" ଭିନ୍ନ ଗ୍ରନ୍ଥରେ ଗଢା । ଅଳ୍ପବୟସ୍କ କେତେଗୁଡ଼ିଏ ବାଳକ ଏହାର ଅଭିନୟ ଦେଖାଇ ଲୋକମନୋରଞ୍ଜନ କରିପାରି ଥିଲେ । ଖଣ୍ଡେ ଦୁଇଖଣ୍ଡ ରାଗରାଗିଣୀ ଛାଡ଼ିଦେଲେ ଆଉଗୁଡ଼ିକ ଅତି ସହଜ । କୃତଜ୍ଞତା ସହିତ ଜଣାଉଅଛି ଯେ ଏ ନାଟକ ଲେଖାଲାଗି ଅଳ୍ପସ୍ଥଳରେ ମୁଁ ବଙ୍ଗଳା ସିନ୍ଧୁବଧ ନାଟକକାରଙ୍କର ପଦାଙ୍କ ଅନୁସରଣ କରିଅଛି । ଇତି ।

ବିନୀତ

ଲେଖକ—

—*—

କୁଶୀଲବଗଣ—

ଅନ୍ଧମୁନି

ଦଶରଥ

ବିଦୂଷକ

ନାରଦ

ଋଷିପୁତ୍ର-ସିନ୍ଧୁ

କଞ୍ଚୁକୀ

ସ୍ତ୍ରୀ—

ମୁନିପତ୍ନୀ

ମାୟା

କୌଶଲ୍ୟା

କୌଶଲ୍ୟାଙ୍କ ସଖୀଗଣ

———

# ପ୍ରସ୍ତାବନା ।

ଦୃଶ୍ୟ— ପର୍ବତମାଳା ଶୋଭିତ ବନସ୍ଥଳୀ ।

ସନ୍ଧ୍ୟା ଚନ୍ଦ୍ରୋଦୟ ।

ଏକ କୋଣରେ ମାୟା—

ଗୀତ,

ମାୟାର ପାଶେ ଛନ୍ନ ଜଗତ

ମ, ର, ଛ ।

ସବୁ ମାୟା, ଯାର କାୟା, ଖାଲି ଛାୟା,
ନାହିଁ ସରତ ॥ ୦ ॥
ଦାର ପୁତ୍ର କନ୍ୟା ସବୁ ମାୟା,
ପୁଣି ସୁଖ ଦୁଃଖ ଖେଳ ଛାୟା,
ସୁରୂପ, କୁରୂପ ଯାହା ସଂସାରେ ଦେଖ,
ସବୁ ଖାଲି ମୋହରି କାୟା ।
ମାୟା ଖେଳା, ମାୟା ମେଳା,
ଚଉଦିଗେ ନୟନେ ଦେଖ ନିରତ ।

——•*○——

# ମୃଗୟା ।



## ପ୍ରଥମ ଅଙ୍କ

### ପ୍ରଥମଦୃଶ୍ୟ—( ଉଦ୍ୟାନ )

( ଦଶରଥ ଭ୍ରମଣ କରୁଥିଲେ । )

ଦଶ—ସୁନ୍ଦର ପଦାର୍ଥସଙ୍ଗେ ମଧୁର ମିଳନ ନୋହିଲେ, ଜଗତ ସୁନ୍ଦର ଦିଶନ୍ତା କାହିଁକି ? ଚନ୍ଦ୍ରରେ ସ୍ନିଗ୍ଧ ମଧୁର କିରଣ ନଥିଲେ, ବସନ୍ତରେ ମଧୁର ମଳୟ ନଥିଲେ, ଜଗତ ମାତିଉଠନ୍ତା କାହିଁକି ? କି ସୁନ୍ଦର ଏ ଉଦ୍ୟାନର ଦୃଶ୍ୟ; କି ସୁନ୍ଦର ଏ ବଧୂଲିର ହାସ୍ୟ; ଫୁଲମୁଖି ପ୍ରତ୍ୟେକବାର ଚୁମ୍ବନ କରେ ! କ୍ଷଣକ ପାଇଁ ପୃଥିବୀର ସାରା ସୌନ୍ଦର୍ଯ୍ୟ ଲୁଟିନିଏ !

( ବିଦୂଷକ ଶୀଘ୍ର ପ୍ରବେଶ ହେଲେ । )

ବିଦୂ—କାହିଁ ମହାରାଜ !

ଦଶ—କଣ, କ'ଣ କହୁଛ ସଖା ?

ବିଦୂ—ଲୁଟହେବ ପର ? ଶୁଣିକରି ଦଉଡ଼ି ଆସିଛି ଯେ ?

ଦଶ—କାହିଁକି ସଖା ? ଉଦ୍ୟାନରେ ନାନା ପ୍ରକାର ତରୁଲତା ରହିଛି, ସମସ୍ତ ଫଳ ଭରା । ଇଚ୍ଛା ଅନୁସାରେ ଉଦର ପୂରଣ କର ।

ବିଦୂ—ରାଜବୁଦ୍ଧି ପ୍ରଳୟଙ୍କରୀ; ଏପରି ତୀକ୍ଷ୍ଣ ବୁଦ୍ଧି ନ ଥିଲେ ରାଜା କାହିଁକି ?

( ଗମ୍ଭୀର ମୁଖରେ ଅନାଇଁ ରହିଲେ । )

ଦଶ—କିପରି ?

ବଟୁ—ଏଇ ସାମାନ୍ୟ କଥାଟା ବୁଝିବାକୁ ବାକି ରହିଗଲା ? ଉଦ୍ୟାନରେ ତ ସର୍ବଦା ଆମ୍ଭର ସଞ୍ଚରଣ ଅଧିକାର, ତେବେ ଆପଣଙ୍କୁ–ଜଣାଇବାର ବିଶେଷ ଅଭିପ୍ରାୟ ?

ଦଶ—ଚିନ୍ତାନାହିଁ ସଖା, ଆମ୍ଭେ ଆଜ ସରଯୂ ତଟର ନିବିଡ଼ କାନନକୁ ମୃଗୟା ନିମିତ୍ତ ଯିବୁଁ । ମୃଗ ମାଂସରେ ତୁମ୍ଭର ଆଶା ପୂରଣ କରିବୁଁ ।

ବଟୁ—ମହାରାଜାଙ୍କର ଜୟ ହେଉ । ତେବେ ଆଦେଶ ଦିଅନ୍ତୁ ମହାରାଜ ! ବ୍ରାହ୍ମଣୀଙ୍କୁ ମଧ୍ୟ ସନ୍ତୁଷ୍ଟ କରି ଦେବି ।

( କୋମଳ କଣ୍ଠରେ ) ମୃଗନୟନି ବ୍ରାହ୍ମଣୀ ଗୋ,
ମାନମୟି ଶ୍ରୀମତୀ ରାଧିକେ,
ମୃଗନେବ ଘେନ
ନେବ ତୋର ଦେବ ଯୋଡ଼ି,
ମାଂସ ହେବ ମୋ ଉଦର ପ୍ରିୟ ।

( ହସି ହସି ) କି ମହାରାଜ ! ପ୍ରସ୍ତାବ ମନ୍ଦ ନୁହେଁ ତ ?

ଦଶ—( ହସି ) ବେଶ, ବେଶ, ଉତ୍ତମ ପ୍ରସ୍ତାବ । ତେବେ ସଖା, ଆଉ ଅଧିକ ସମୟ ନାହିଁ, ଚାଲ ଅସ୍ତ୍ରାଗାରକୁ ଯାଇ ଭଲ ଭଲ ଶର ବାଛି ନେବା । ବହୁଦିନୁ ମୃଗୟାର ଆଶା କରୁଛି । ଆଜ ଅନ୍ଧକାରରେ ମୃଗୟା କରିବି । ଶବ୍ଦ-ଭେଦୀ ମୋର ପ୍ରଧାନ ଅସ୍ତ୍ର । ସେହି ଶର ବଳରେ ବନ୍ୟଜନ୍ତୁ ବିନାଶକରି ମନର ଆଶା–ମେଣ୍ଟାଇ ନେବି, ଚାଲ, ଆଉ ବିଳମ୍ବ କରନାହିଁ ।

ବଟୁ—( ଭାବିଲାପରି ) ଅଳ୍ପ ଅପେକ୍ଷା କରନ୍ତୁ ମହାରାଜ !

ଦଶ—ଅଉ ପୁଣି କାହିଁକି ?

ବିଦୂ—ମହାରାଜ ! ଏ ବ୍ରାହ୍ମଣର ଦେଖାଇଥିମନ୍ତୁ ଜଗତ । ଅପଣତ ବନକୁ ଯିବେ, ମୁଁ ରହିବି କିପରି ?

ଦଶ—ଆଫ୍ୟାଯ୍ମିତ ହେଲ ସଖା, ତୁମ୍ଭର ମୋ ପ୍ରତି ଅଗାଧ ପ୍ରେମ ! ( ହସିଲେ । )

ବିଦୂ—ଶକ୍ତି ନାହିଁ ମହାରାଜ ! ଶକ୍ତି ନାହିଁ, ନୋଇଲେ ଏଇ ବୁକ ପଇତା ଲମ୍ବିତ, ଦୀର୍ଘ ପଞ୍ଜର ଶୋଭିତ ହୃଦୟ ଚିରି ଦେଖାଇ ଦିଅନ୍ତି ମହାରାଜାଙ୍କୁ ମୁଁ କେତେ ଆଦର କରେ । ଏ ଭିତରେ କେତେ ପ୍ରେମ, କେତେ ଅଦର, ନାଭି ନାଭି ମହାରାଜଙ୍କ ଲାଗି କଲହ କରୁଛନ୍ତି । ସାକ୍ଷୀ ତାର,-ମୋର ଏଇ ପର-ହୃଦୟ-ଦର୍ଶୀ-ଇନ୍ଦ୍ରିବର-ନୟନ—ଯୁଗଳ ! ( ସ୍ୱଗତ ) ଅଉ ସାକ୍ଷୀ ତାର ଏଇ ଜଠର ଜ୍ୱାଳା । ନୋହିଲେ କି ଆଦର କରି ଭଲପାଏ ? ରାଜା ନାଗପାପ, ତା'ର ଆଦର କରେ କିଏ ? ଗଣ୍ଡନାହିଁ ଯାହାର, ପେଟ ପୋଡ଼େ ଯାହାର ।

ରାଜାର ପୀରତି ବାଲିର ବନ୍ଧ,
ଦଣ୍ଡକେ କୋରଡ଼ା ଦଣ୍ଡକେ ଚନ୍ଦ ।

ମହା ମୂର୍ଖ ନୋହିଲେ, ରାଜାକୁ ବନ୍ଧୁପଣରେ ଭୋଳ ଅନ୍ଧ ? ( ପ୍ରକାଶ୍ୟେ ) ମହାରାଜ, ଏଇତ ପ୍ରାୟ ସନ୍ଧ୍ୟା ହେଲା । ତେବେ ବିଳମ୍ବ କାହିଁକି ?

ଦଶ—ନା ସଖା, ଏଇ ଦେଖ, ପଶ୍ଚିମ ଗଗନ କେଡ଼େ ସୁନ୍ଦର ଶୋଭା ଧରିଲାଣି । ଅଳ୍ପକାଳ ମଧ୍ୟରେ ରଜନୀ ସୁନ୍ଦର ତାରକା ଚୁମୁକି ଖଚିତ ଘନଘୋର କୃଷ୍ଣଶାଢୀ ପିନ୍ଧି ଶିଶିର ସ୍ନାତରେ ଅବନତମୁଖ

ଯାତ୍ରା କରିବ । ଯାଅ ସଖା, ତୁମେ ଯାଇ ସାରଥୀଙ୍କୁ ସମ୍ବାଦଦିଅ । ରଥ ପ୍ରସ୍ତୁତ କରୁ, ମୁଁ ଅସ୍ତ୍ରାଗାରକୁ ଯାଏଁ ।

ବଟୁ—( ସ୍ୱଗତ ) ତେବେ ଗୋ ବ୍ରାହ୍ମଣୀ, ଚନ୍ଦ୍ରା ହୃଦ ମୋର, ଦେଖିବ ତୋର ଗର୍ବ । ହରିଣର ନୟନ ସଙ୍ଗେ ମିଳାଇବ ତୋର ନୟନ ଯୁଗଳ ।

ରାଜା—ଧନ୍ୟ ତୁଅ ସଖା ! ମୃଗୟାରୁ ଫେରିଲେ ସେ ଚନ୍ଦ୍ରା । ବର୍ତ୍ତମାନ ଚାଲ, ( ଅଗ୍ରସର ହେଲେ )

ବଟୁ—ତେତେବେଳେ ତ ପେଟର ଚନ୍ତା ମହାରାଜ ! ଯାହା କରିବାର ଆଗରୁ କରିନିଏଁ । ( ଦଶରଥଙ୍କପଛେ୨ ଗଲେ )



୨ୟ ଦୃଶ୍ୟ—ଅଳକ ନନ୍ଦକ ପଥ ( ବୃଦ୍ଧ କଞ୍ଚୁକୀ ପ୍ରବେଶ )

କଞ୍ଚୁକୀ—ବୁଢା ହେଲେ ଆଖି କାନ କେହି ଅଧୀନରେ ରହନ୍ତି ନାହିଁ । ଦଣ୍ଡିକାଠି ମହରା ହେଲ । ଏବେ ଆଖିକି ହଲ ଦିଶୁନାହିଁ । କାନକୁ ତ ଯମା ଶୁଭୁନାହିଁ ।

ବଟୁ—(ପ୍ରବେଶ ହୋଇ) ବାବା, ଶକତ ଜଲ୍ଦି ହାଲୁଚେ ପଢ଼ୁଛୁ । ରାଜା କହିଲେ ରଥପାଇଁ ସାରଥିଙ୍କ ଡାକିବ । ଶିକାର କରିବାକୁ ଯିବେ । ମୁଁ ହେଲେ ଆଗରୁ ବନ ରହନ୍ତି । ଶିକାରରେ ଏମିତ ଜଲ୍ଦି ତ ମିଳିବେ ନାହିଁ । ଅଜ ଭାଗ୍ୟରେ କଣ ଅଛି ଜଣାନାହିଁ । ଏଙ୍କ ପ୍ରଥମେ ଏ ଅମଙ୍ଗଳ ମୁହଁ ଦେଖାପଡ଼ିଲଣି ତ !

କଞ୍ଚୁକୀ—( ପଛକୁ ଫେରିଚାହିଁ ) ଏଁ ? କିଏ ? କ'ଣ କହୁଛ ?

ବଟୁ—ରକ୍ଷାକର ବାବା !

କଷ୍ଟୁ—ହଁ ଯିବା ? ମୋତେ ପଚାରୁଛ ନା ? ମୁଁ କା ? ହଁ, ଗଙ୍ଗାଙ୍କୁ ତୁଳସୀ ଦବାକୁ ଯିବ ।

ବନ୍ଧୁ—(ଉଚ୍ଚେ) ବୋଉଲ କୋଉଆଡେ ଯାଇଥିଲେ ?

କଷ୍ଟୁ—କାଲି ! ହଁ, ପାଞ୍ଚଟଙ୍କାରେ କିଣିଲ । ( କାନେଇକରି ଶୁହଁଲେ )

ବନ୍ଧୁ—ଓଃ, ଆସ୍ଥ ହଇରାଣ ହେଲିଗଲ ( ବଡ ପାଟିରେ ) କୁଆଡେ ବାହାରି ଛନ୍ତ ଏକୁଟିଆ ।

କଷ୍ଟୁ—ହଁ, ବାବା, କୁଆ କୁଆ, ଦାନ୍ତନାଇ, ଦାନ୍ତନାଇ !

ବନ୍ଧୁ—ଦାଢା ଏଠି ଜଳୁଟିଏ ।

କଷ୍ଟୁ—କ'ଣଟିଏ ? ହଁ ଝଣ୍ଡି ଗଛଟିଏ । ତୁମେ ଏତେକଥା କେଉଁଠୁ ଜାଣିଲ ବାବା ? କାଲତ ବାହୁସିଂ କିଣିଛୁ ।

ବନ୍ଧୁ—ନା, ନା, ତା କହୁନାହିଁ, ଖାଇଲେଣି ?

କଷ୍ଟୁ—ହଁ, ଘରକୁ ଆଣିଲଣି, କାଲଠୁଁ ।

ବନ୍ଧୁ—ଭଗବାନ୍ ! ଓଃ, କ ଅଭୁଆରେ ପଡ଼ିଲ । ସାରଥିକ ଦେଖିଥିଲେ ।

କଷ୍ଟୁ—ଏଁ ।

ବନ୍ଧୁ—(ଉଚ୍ଚେ) ସାରଥୀ, ସାରଥୀ ?

କଷ୍ଟୁ—(ହସି) ହାତ ? ହାତୀ ନୁହେଁମ ଭଲ୍ଲୁ ! ମୁଁ କାଲିବୋଲି କ ତୁମେ କାଲି ? ମୁଁ ହାତୀ କିଣିବ କାହିଁ ? ପାଞ୍ଚଟଙ୍କାରେ କ ହାତୀ ମିଳେ ? ହାତୀନୁହେଁ, ମୋତେ ପଚାରୁଛ ହାତୀ ? ହାତୀ ? ହାତୀ ନୁହେଁ ବାଛୁରୀ ! ବା ବ., ବୁଢା ହେବେ ସେମିତ କାନକୁ ଶୁଭେନାହିଁ ଏଇଥି ପାଇଁ ତୁମେ ପରିହାସ କରୁଛ ? ହଁ, ହଁ, ତୁମେ ବ ଦିନେ ଏଇଦଶା ହେବିଗିବ ଯେ, ଯା ଯା, ମୁଁ ଯାଉଛୁ । ସଞ୍ଜ ହୋଇଯିବ, ପରସାଦ ପତର ଗଙ୍ଗାଙ୍କୁ ଦେବ ।

ବିଦୂ—ହଉ, ହଉ, ମୁଁ ତେବେ ଯାଉଛି ।

କଞ୍ଚୁକୀ—ହିଁ ସବୁଦିନ, ମୁଣ୍ଡିଆ ମାରୁଛୁ, ବେଗେ କେମିତ ରାଜାଙ୍କର ପୁଅ ହେବ । ଯାଏଁ । (ପ୍ରସ୍ଥାନ)

ବିଦୂ—ଉଲ୍ଲତ ଆଉ ଜଗତରେ ନଥାନ୍ତି । ଭଲ ପାଖେ ପାଖେ ମନ୍ଦ । ଚନ୍ଦ୍ରଟି ଯେମିତ ସୁନ୍ଦର ସେମିତ ତା ଦିହରେ କଳଙ୍କ ଚିହ୍ନ ରହିଛି । ରାଜାଘରେ ଏତେ ଭଲ୨ ଚାକର ଥାଉ ଥାଉ ଗୋଟେ ଦିଠା କୋଡି ହୁଣ୍ଡା ନଥିବେ କାହିଁକି ? ରାଜା ଗୋଜା ଖାଇ ପିଇ, ଆଉ କି କାମ ? ପୋଷିଛନ୍ତି ଗୋଟେ କାଲୁ । ରାଜାର ବା କିଦୋଷ ? ସେ କି ଦେଖୁ-ଛନ୍ତି ? ହୁଣ୍ଡା ଯେତେକ ଅମେ ତାଙ୍କର ଖିଜମତଦାର । ଅମେ ସବୁତ ଏକଥା ତାଙ୍କ କାନକୁ ନେବା ଉଚିତ । (ନେପଥ୍ୟକୁ ଚାହିଁଲେ ।) ଏ କିଏ ? ସାରଥୀତ (କଉପାଟିରେ) ଓ ସାରଥୀ ? ଏ-ସା-ର-ଥୀ-। ଏଁ ଏଁ ଏଁ ଥି । ବା ବା କପାଳଗୁଣେ ଏବି କି କାଳୀ ହେଲା ? ଯାଏଁ, ଚାବୁକ ସର୍ଓ୍ୟାର ଘୋଡାଇ ଅମ୍ଭେମାନେ, ନ ଦଉଡ଼ ଗଡ଼ କାଇଁ ? ଦେ ଦୌଡ଼ । ଦେ ଦୌଡ଼ । (ଶୀଘ୍ରପ୍ରସ୍ଥାନ)

—❊:○:❊—

ତୃତୀୟ, ଦୃଶ୍ୟ ।—(ଅଳନ୍ଦ) ।

କୌଶଲ୍ୟାଙ୍କ ସେବକ ସଖୀମାନେ ପ୍ରବେଶ ହେଲେ ।

ସଖୀଗଣ— (ଗୀତ ଓ ନାଚ)

ପ୍ରେମ ଯଦି ସହ ଶିଖିବୁ ନଗାନା । ।
ମାନବ ଜାଣେ କି ତା ?
ପ୍ରେମ ଛବି ପ୍ରେମ ରବି,
ଜାଣେ ପଞ୍ଚ ସବିତା ।

ପ୍ରେମେ କୁମୁଦ ହସଇ—
ପ୍ରେମ ଲହରୀ ତାଳେ;
ଦୂରେ ହିଜଣ, ତେବେକେ ଜୀବନ
ନାଚଇ ପ୍ରେମ ପବନେ;
ଅଧିକ ଅନ୍ଧାର ଅଧିକ ଆଲୁଅ,—
କୁମୁଦିନୀ ଦେଖନ୍ତା ।
ଚହିଁ ରହେ ବନନ୍ତା ।
ପ୍ରେମ ମାଗି, ପ୍ରତ୍ୟାଶୀ କୁମୁଦ, ପଙ୍କ ଗଗନେ ଚହିଁ,
ପାଖୁଡ଼ା ମେଲାଇ, ସବୁତକ ମଧୁ; ଲୁଚାଇ କୁଛାଇ ନଏ;
ପ୍ରେମଟିଇ ଏକା, ଜୀବନ ଜୀବନା, ପ୍ରେମିକ ଜାଣଇତା ।

—୦✱୦—

କୌଶଲ୍ୟା—ସେକଥା କହୁନାହିଁ ସଖି । ଜଗତର ମନୁଷ୍ୟ ପ୍ରେମକରି ଜାଣେବୋଲି କହିଲେ ତାସଙ୍ଗେ ମହାରାଜାଙ୍କୁ ମଧ୍ୟ କହିହେଲା । ମିଛକଥା, ଏଇ ବୁଝ ସହି, ରବି ଯଦି କୁମୁଦକୁ ପ୍ରାଣଭରି ପ୍ରେମ ଦେଇଥାନ୍ତା ତେବେ ଅସ୍ତ ହୁଅନ୍ତା କାହିଁକି ? ସଞ୍ଜ ହୋଇଗଲେ କୁମୁଦର ଆଉ ସେ ସୁଖ ଥାଏକି ? ସେକଥା, ସେ ଛଳନାତ ମହାରାଜଙ୍କୁ ଜଣାନାହିଁ ।

୧ମ ସଖୀ—ସହି; ତୁମର ମନକଥା ଶୁଣିବାକୁ ସେମିତ ଗୋଟେ ଗୀତ ଗାଇ ଦେଇଥିଲୁଁ ନା । ବିଧାତା ତିହିଁଙ୍କୁ ସମାନ କରି ଗଢି ଜଗତକୁ ପଠାଇ ଦେଇଛି, ଆଉ ସେ ଖେଳ ଦେଖି, ଭାଗ୍ୟବଶ ତୁମ୍ଭର ଏହି, ଆମେ ସଖୀମାନେ (ଅନ୍ୟପ୍ରତି) କହିଁ କଗୋ ?

୨ୟ—ଏକଥାରେ ଅଉପଦେ କହିବାକୁ ବାଟନାହିଁ ।

୧ମ—( କୌଶଲ୍ୟାଙ୍କ ମୁଖ ଫେରାଇ ) ଏଣେ ଅନା; ଅନା, ଅନା, ଅନେ-
ମାଳେ ଶୁଖିଯାଉଛନ୍ତି । ଏଥର ସହ ତୋର କର୍ମ୍ମ ଭୁଲ ।

( ହସି ଗିତଗାଇଲେ )

ରଖିଥା' ସହ ନାୟୁନ କଣ୍ଠାରି ପକାଡ଼ି ।
ଆସିଲେ ଗୋ ଗୁଣମଣି,
ଅଭିମାନ ମନେଗୁଣି, ଦେବୁଛି ଗୋ ଥରେ ଅକାଣ୍ଡ !

ଜଣେ(ରାଣୀଙ୍କୁ ଠାଣିଧରି)—ସହ ସହ, ମୋର ପଦେ ଶୁଣ ।

ପଡ଼ିବୁ ନାହିଁଟି ପ୍ରୀତି ପାଲରେ ଧରା ।
ଭୁଲିଯିବୁ ନାହିଁ ଦେଖି କେତକୀ ଝରା ।

ଅନ୍ୟଜଣେ—ଏ, ମୋର ପଦେ, ମୋର ପଦେ ।

ଧିରେ ଶ୍ରେରି କରି
ମନ ଶ୍ରେରି କରି
ମାର ଶାଣ କରି
( ନାୟୁନ କଣ୍ଠାରି )
( ଛଲାଇ ) ( ଆରେ ) ନାୟୁନ କଣ୍ଠାରି ।

( ପକ୍ଷିଗଣ ପ୍ରସ୍ଥାନ )

କୌଶଲ୍ୟା—ଉଃ, କାହା ଜ୍ୱାଳାରେ ଯୋଡ଼ମରିବ । (ଚମକି) ହେଇଚ ! ସତେ ମହାରାଜତ !

ଦଶରଥ—( ପ୍ରବେଶହୋଇ ) ପ୍ରିୟେ, ବଡ ଚଞ୍ଚଳ ଥିଲପରି ଲାଗୁଛ । କଥା କ'ଣ ?

କୌଶ—ନାଁ କିଛି ନୁହେଁ ମହାରାଜ ! ( ଚମକି ଗୃହେଁ ) ଏ, ଅସମୟରେ ଏକେଣ କାହିଁକି ମହାରାଜ ? ସମ୍ମୁଖରେ ସୁଖ-ନଶାର ସହଚରୀ ମଧୁର

ସନ୍ଧ୍ୟା, ଅନ୍ଧାର ଆଲୋକର ବଧିବଦ୍ଧତ ବିବାଦ ଲାଗି ଯେପରି ପଶୁ ପକ୍ଷୀ, ଆଗ୍ରହରେ ଶବ୍ଦ କରି କରି ଏଣେ ତେଣେ ଧାଉଁଛନ୍ତି । ସନ୍ଧ୍ୟା ତାରା ପ୍ରଣୟୀର ପଥ ଚାହିଁ ସାଗରର ନୀଳଜଳ–ଦର୍ପଣରେ ମୁଖ ଦେଖି ନିଜ ନିଜର ବେଶ ରଚନାରେ ବ୍ୟସ୍ତ । ଏ ମଧୁର ସମୟରେ ଆପଣ ଏବେଶରେ କାହିଁକି ? ମହାରାଜ, ଏସମୟରେ କୁଆଡ଼େ ଯିବେ ?

ଦଶରଥ—ମୃଗୟା ଲାଗି ଯିବାର ଇଚ୍ଛା କରିଛୁ, ପ୍ରିୟେ ! ( ଆଦର କରି କହିଲେ )

କୌଶଲ୍ୟା—ମୃଗୟା !

ଦଶରଥ—ହଁ, ପ୍ରିୟେ, ଆଶ୍ଚର୍ଯ୍ୟ ହେଲ କାହିଁକି ?

କୌଶଲ୍ୟା—ହେଲି ମହାରାଜଙ୍କର ସମୟ ବିବେଚନା ଦେଖି । ଘୂରିଆନ୍ତେ ହିଂସ୍ର ଜନ୍ତୁ । ରଜନୀର ଘୋର ଅନ୍ଧକାର, ବନପଥ କଣ୍ଟକାକୀର୍ଣ୍ଣ, ତହିଁରେ ବର୍ଷାକାଳ, ମେଘର ଘୋର ଗର୍ଜନ; ଥରେ ଥରେ ଚପଳା ଆଲୋକ ଚମକ ରେଖା ନିବିଡ ନିଶାର ଅନ୍ଧକାର ଆହୁରି ଶତ ଗୁଣ ବର୍ଦ୍ଧିତ କରି ଦିଏ । ଏ ଅକାଳ ମୃଗୟାର ଇଚ୍ଛା ଦେଖି ଆଶ୍ଚର୍ଯ୍ୟ ହୁଏ, ମହାରାଜ ।

ଦଶରଥ—( ହସି ) ଅକାଳ ! ଭରୁନାରି, ଆଶ୍ଚର୍ଯ୍ୟ ହେଲ ? ସର୍ବିୟର କାଳା–କାଳ ବିବେଚନା ଶୁଣି ମୁଁ ଆହୁରି ଆଶ୍ଚର୍ଯ୍ୟ ହେଉଛି ପ୍ରିୟେ ! ବିଶେଷତଃ ମୁଁ ରାଜା । କୋଟି ପ୍ରାଣର ଜୀବନୀ ଶକ୍ତି ମୋର ଅଣୁ–ପରମାଣୁ ମଧ୍ୟରେ ଅହରହ ଜାଗ୍ରତ । ତେବେ କି କଠୋର ପ୍ରାଣରେ ଘୂରି ଆନ୍ତେ ହିଂସ୍ର ଜନ୍ତୁର ଭୟରେ ଅକୁଳିତ ପ୍ରଜା ପୁଞ୍ଜର ଚିତ୍କାର ଶୁଣି ଧୈର୍ଯ୍ୟ ଧରି ରହି ପାରିବି ପ୍ରିୟେ ? ନା, ନା, ଶୀଘ୍ର ପ୍ରତିକାର ଅବଶ୍ୟକ ।

କୌଶଲ୍ୟା—ପ୍ରଜା ରକ୍ଷଣ ରାଜାର କର୍ତ୍ତବ୍ୟ, କିନ୍ତୁ ପ୍ରିୟ ତମ, ନିୟମ ଲଙ୍ଘନ ମଧ୍ୟ ସେହି ପରି ଅକର୍ତ୍ତବ୍ୟ । ବୁଝି ପାରିଲି ନାହିଁ, ଅନ୍ଧକାର ରଜନୀରେ ଶିକାର କରିବା କିପରି ଉଚିତ ହେବ ଚାରିଆଡ଼େ ଅନ୍ଧକାରର ଛାୟା, ହିଂସ୍ରଜନ୍ତୁ ଲକ୍ଷକରି କିପରି ଶର ସନ୍ଧାନ କରିବେ ମହାରାଜ ! ଅପମୃତ୍ୟୁ ଆଶା, ମହାରାଜଙ୍କର ବିଫଳ ମନୋରଥ ହୋଇ ଫେରିବା ଭେଳେ ପ୍ରଶଂସାର କଥାବୋଲି ମନେ ହୁଏ-ନାହିଁ, କଥା ମାନନ୍ତୁ ମହାରାଜ ! କାଲି ପ୍ରତ୍ୟୁଷରେ ଶିକାର କରିବାକୁ ଯିବେ ।

ଦଶରଥ—ସେ ଭୟକରନାହିଁ, ପ୍ରିୟେ ! ରଜନୀର ଘନଘୋର ଅନ୍ଧକାର, ଝଡ଼ର ଗଭୀର ଗର୍ଜନ, ବର୍ଷାର ଅବିରଳ ବାରିଧାରା ମଧ୍ୟରେ ମୋର ଶର ରଣ ରଙ୍ଗିଣୀ ବିଜୁଳୀ ଖେଳା ଖେଳାଇଦେବ । ଦେଖ ( ଶରକାଢ଼ି ) ଏଇ ମୋର ଶବ୍ଦଭେଦୀ ବାଣ । ପଶୁର ଶବ୍ଦ ଲକ୍ଷ କରି, ଶର ସନ୍ଧାନ କଲେ, ନିଜେ କୃତାନ୍ତ କାଳ ମଧ୍ୟ ରକ୍ଷାକରି ପାରିବ ନାହିଁ । ବାଧା ଦିଅନାହିଁ ପ୍ରିୟେ ! ଏହି ଶରର ଗୁଣ ପରୀକ୍ଷା ନିମନ୍ତେ ମୁଁ ବଡ ଉଦ୍‌ବିଗ୍ନ ହୋଇ ପଡ଼ିଛି ।

କୌଶଲ୍ୟା—ଚିରକାଳ ପୁରୁଷ ଜାତିର, ନାରୀ ବାକ୍ୟରେ ଅନାସ୍ଥା ପ୍ରଦର୍ଶନର ଅଭ୍ୟାସ ରହିଛି, କିନ୍ତୁ ନାଥ, ଆଜ ମନ ଯେପରି ଥରେ୨ କାହିଁକି ଚମକି ଉଠୁଛି, ( ଟିକିଏ ଇତସ୍ତତହୋଇ ଭୟର ଚିହ୍ନ )

ଦଶ—( କର ଚୁମ୍ବନକରି ହସି ) ସୋହାଗିନି, ତୁମ୍ଭର ଅଗାଧ ପ୍ରେମହିଁ ତୁମ୍ଭ ମନରେ ଭୟର ସଞ୍ଚାର କରାଇ ଦେଉଛି । ଭୟନାହିଁ ପ୍ରିୟେ, ( କଞ୍ଚୁକି ଆସୁଥିବାର ଦେଖି ) ଏଇ ଦେଖ ପ୍ରିୟେ, ବିଷ୍ଣୁପ୍ରଦ-ତ୍ତା ତୁଳସିର ମଞ୍ଜରୀ ନେଇ ବୃଦ୍ଧ ଉପସ୍ଥିତ । ମନୋବାଞ୍ଛା ନିଶ୍ଚୟ ସଫଳ ହେବ ।

କଞ୍ଚୁକି—( ସ୍ବଗ ) ଏଁ ? ଅସମୟରେ ଏକ ସାଜ ମହାରାଜ ! ମସ୍ତକରେ ତାଜ, ହାତରେ ଧନୁଶର, ବଡ଼ ଭୟ ଲାଗେ ଯେ, କି ଶର ଯୋଇଛ ! ଓଃ, ଘରିଚେଲ ତାର, ଏଁ ?

ଦଶରଥ— ଏ ଶର ଶବ୍ଦଭେଦୀ ।

କଞ୍ଚୁକି—କସ ? ସତ୍ୟବାଦୀ ! ବାହାବା, ବାଃ ବାହାଦୁର, ମହାରାଜାଙ୍କୁ ଲଗାଇ ଉନରାଜା ଅମଳ ଦେଖିଲି, ଅନେକ ଶରନାମ ଶୁଣିଛି, ବାକି ଏମିତ ନାଁ ଶୁଣିନଥିଲି । ଏଣିକି ଏଣିକି କାଳଟା ଯେମିତ ବପରୀତ ରକମର ହେଲାଣି, ଶରର ନାମତ ସେମିତ ଅଡୁଆ ତଡୁଆ ହେବା-ଦର୍କାର । ଆଉ କିଛି ଦିନ ଗଲେ ଶରମାନଙ୍କର ନାମ ହେବ, ଧାର୍ମିକ, ଦୟାଳୁ, ସରଳ, ନ୍ୟାୟବାନ, ଇତ୍ୟାଦି ଇତ୍ୟାଦି ଇତ୍ୟାଦି । ହଁ ମହାରାଜ, ଏବେଳରେ କେଉଁ ଦେଶକୁ ଲଢିବାକୁ ବାହାରିଲେ ?

ଦଶ—ଲଢିବାକୁ ନୁହେଁ, ମୃଗୟା ।

କଞ୍ଚୁକି—( ହସି୨ ) ଓଃ, ଗୟା ? ଗୟା ? ହଁ, ସେତ ଉତ୍ତମ କଥା ! ସତପୁଅ ହେଲେ ଗୟାରେ ପିଣ୍ଡଦାନ କରି ପିତାମାତାଙ୍କୁ ଉଦ୍ଧାର କରେ । ଯାଅ ବାବା, ମହାରାଜ ଅଜ, ଆଉ ମା' ଇନ୍ଦୁମତୀଙ୍କି ଗୋଟିଏ୨ ପିଣ୍ଡ ଦେଇଆସ । ଆଉ ଗୋଟିଏ କଥା କହୁଛି ବାବା, ମୋରତ ପିଲା ଛୁଆ ନାହିଁ । ପିଲାଦିନୁ ମହାରାଜାଙ୍କୁ ପୁଅପରି ପାଳି-ଆସିଛି, ସ୍ନେହ କରିଛି । ମନେକରି ଏ ବୁଢା କଞ୍ଚୁକିର ମଧ୍ୟ ଗୋଟିଏ ପିଣ୍ଡଦିଅ ବାବା ! ବେଶ୍ ସୁଖରେ ଅଛି । କେତେ କାଳର ହେଲାଣି, କାନକୁ ଆଉ ଯମ କିଛି ଶୁଭୁନାହିଁ । ଏତେବେଳେ ମୁଠିଏ ପିଣ୍ଡ ପାଇଲେ ବଞ୍ଚିଯିବି । ଯଦିବା କହ, ଏ ବୁଢା ବ୍ରାହ୍ମଣଟା ବଞ୍ଚୁଛି-ନାହିଁ, ନାହିଁ, ବାବା, ମୁଁ ବଞ୍ଚୁନାହିଁ, ମଲିଣି, ମଲିଣି ।

ଦଶ—ପ୍ରିୟେ, ଏ ବଧୀର ବ୍ରାହ୍ମଣଙ୍କୁ ବୁଝାଇବା ସାଧ୍ୟାତୀତ । ଦେଖ ଯଦି ତୁମ୍ଭେ ପାର ।

କୌଶଲ୍ୟା—ଯୁକ୍ତ ନୁହେଁ ଶୀକାର ।

କଞ୍ଚୁକୀ—ନ ହେଲେ ଅଉ କ କରିବ ? ମହାରାଜ ସ୍ୱୀକାର କଲେ ନାହିଁ । ମୋର କର୍ମ୍ମର ଦୋଷ ଯେ । ଅଉ କ କରିବି ? ନିଜେ ନିଜର ପିଣ୍ଡଟା ଦେଇ ଦେବ ?

ଦଶରଥ—(ହସି) ବୃଦ୍ଧ ! ତୁମ୍ଭେ ପିତାସମ ମାନ୍ୟ ! ତୁମ୍ଭର ସ୍ୱର୍ଗପ୍ରାପ୍ତି-ହେଲେ ପିଣ୍ଡ ଦାନ ମୁଁ କରିବି । ଆଉ ବ୍ରାହ୍ମଣ ମାନଙ୍କୁ ତୁମ୍ଭ ଲାଗି ହଜାର ହଜାର କଳସ ଦାନ କରିବି ।

କଞ୍ଚୁକୀ—ଏଁ ?

ଦଶ—ହଜାର କଳସି ।

କଞ୍ଚୁକୀ—(ହସି) ପୂଜାର ତୁଳସି ? ହଁ । ଏବେ ଟିକିଏ ଏମିତି ଜୋରରେ ନ କହିଲେ କିଛି ଶୁଭୁନାହିଁ ବାବା ! ଏଇତ ଆଣିଛି । ମଥାରେ ଛୁଆଇଁ ଦିଏଁ । ବେଗେ କେମିତି ପୁଅମୁଖ ଦେଖ, ଆସ ମା ! ତୁମକୁ ଦିଏଁ । ପୁତ୍ରବତୀ ହୁଅ, ସୌଭାଗ୍ୟ ବତୀ ହୁଅ, ଶୀଘ୍ର ପୁଅ ମୁହଁ ଦେଖ ।

ଦଶରଥ—(ହସି ପ୍ରସ୍ଥାନ ଓ କୌଶଲ୍ୟାଙ୍କ ଲଜ୍ଜିତାବସ୍ଥା)

କୌଶଲ୍ୟା—ଦ୍ୱିଜବର ! ରାଜାଙ୍କର ମଙ୍ଗଳ କାମନାରେ ବିଷ୍ଣୁ ମନ୍ଦିରରେ ଯାଇ ଶୁଭ ସ୍ୱସ୍ତ୍ୟୟନ କର । ( ପ୍ରସ୍ଥାନ )

କଞ୍ଚୁକୀ—କଅଣ କହିଗଲେ ? କାତ୍ୟାୟନ ? ଓଃ ! ଋଷି ! କାତ୍ୟାୟନ ? ସେ ତ ମହାରାଜଙ୍କ ସଙ୍ଗରେ ଗଲାଣିବେ ? ଯେ ଯା' ବାବା; ଏ ବୁଢାକୁ ବାଳ ମୁଠେ ପିଣ୍ଡଦିଅ । ଏଇକଥା । ( ପ୍ରସ୍ଥାନ )

୫ମ ଦୃଶ୍ୟ

ପଥ

ନାରଦ (ଗାଇ୨ ପ୍ରବେଶ ହେଲେ)

ସୋହନୀ—ତେତାଲା ।

ଅଖିଳ ଜଗତ ମଧ୍ୟରେ ସୋରେ, ମୂର୍ତ୍ତିତ ତବ ରହସ୍ୟା ।
ଅତୁଳ, ଅଘଟ, ଅକଣ୍ଠ ତୁମ୍ଭେ, ସର୍ବ ଜଗତ ମହାନକାୟା ।
ତୁମ୍ଭେ ଆଦିଅନ୍ତ, ତୁମ୍ଭେ ହେ ଅନନ୍ତ,
ତ୍ରିଜଗତେ ଏକା ତୁମେ ବଳବନ୍ତ,
ସୃଷ୍ଟି ସ୍ଥିତିକର୍ତ୍ତା, ଭୁବନ ନିୟନ୍ତା, ସୁଖ ଦୁଃଖ ଲୀଳା—
ତୁମ୍ଭରି ମାୟା ।

ନାରଦ—ଜଗବନ୍ଧୁ ଦେଖି ନାହିଁ,
ଦିନାନ୍ତେ ଥରେ ବଲ ଦିଅ ହରି,
କହିବାକୁ ଜଗବନ୍ଧୁ ବୋଲି
ପାପି ପାପୁଁ ଜଗତକୁ,—
ଉଦ୍ଧାର କାରଣେ
ଶୁଣିଛୁ ମୁ ହରି,
ହୁଅ ଭବେ ଅବତୀର୍ଣ୍ଣ ।
କମ୍ପିତ ଧରଣୀ ଏବେ—
ଦୈତ୍ୟ ପାପ ଭରେ ।
ବାଜେ କୋଲାହଳ ଚଉଦିଗେ
ଏକ୍ରନ୍ଦନ ନ ଶୁଭେକି କର୍ଣ୍ଣ କୁହରରେ ?
ହରି ! ଅନନ୍ତ ଶୟନ ତ୍ୟାଗି,

ନୀଳାଚଳ ନାଥ,
କିପରି ସହୁଛ ଏଦାରୁଣ ପାପ ?
କମ୍ପୁ ନାହିଁ ହେମ ସିଂହାସନ ?
କେବେ ପ୍ରଭୁ ? କେତେଦିନ ଆଉ ବାକି ?
କେବେ ପ୍ରଭୁ ଦେବ ଦେଖା
ଦଶରଥ ଗୃହେ ?
ନୀଳମଣି,
କୋଳ କରି ନେଲେ,
ପବିତ୍ର କରିବୁଁ ପ୍ରାଣ ମନ ।
ତୁମ୍ଭ ମାୟା ତୁମ୍ଭଙ୍କୁ ଗୋଚର ହରି ।
କହ ପ୍ରଭୁ,
ଦୈତ୍ୟ ବଳେ ଦଳିତ ଦେବତା ।
କାହିଁ ଗଲେ ମାୟା ଦେବୀ ?
ଦେବତା ପ୍ରାର୍ଥନା ଘେନ
ଅବତରି ଥିଲେ ମର୍ତ୍ତ୍ୟେ,
ଦେଖେଁ ! କରେ ମୁଁ ସ୍ମରଣ ତାଙ୍କୁ ( ବସି ଧ୍ୟାନକରିବା )

( ମାୟା ଦେବୀଙ୍କ ଆବିର୍ଭାବ )

( ଗୀତ )

ଖମ୍ବାଜ—ଢିମା ତେତାଲ ।

ଦେଖୁଛିକି ମୋର ଲୀଳା, ହା ! ଭବ ଜଗତରେ ।
ନୂତ, ନୂତ; ପଛେ ପଛେ, ରହୁଥାଏ ନିରନ୍ତରେ ।
ପଲକେ ପଲକେ ଛବି ନୂଆ କରଇ;

ପୁଲକେ ପୁଲକେ ଦୁଃଖ ଦିଏ ମିଶାଇ,
ଦୁଃଖି ଦୁଃଖ ଝାରଧାରେ, ଦୟା ନାହିଁ ମୋ ଅନ୍ତରେ ।
କିପାଁ, ବତ୍ସ କରିଲ ସ୍ମରଣ ?
କିବା ପ୍ରୟୋଜନ ?
ନାରଦ—ପ୍ରଣାମ ଜନନି ! (ପ୍ରଣାମକଲେ)
ଜନନି ଗୋ,
ବହୁ ଦିନୁ ଦୈତ୍ୟ ଡରେ—
ପ୍ରପୀଡ଼ିତ, ସୁର, ନର, ଗନ୍ଧର୍ବ, କିନ୍ନର ।
ତେଣୁ ପ୍ରଭୁ ନୀଳାଚଳ ନାଥ କୃପାବହି
ହେବେ ଅବତାର ନର ଦେହେ ।
ତୁମ୍ଭ ବିନୁ ଏକାର୍ଯ୍ୟ ସାଧନେ,
ନହେଁ ଆନ ସମରଥ ।
ଜନନୀ ଗୋ,
ପ୍ରଶ୍ନ କରେ ଶ୍ରୀଚରଣେ,
କେବେ ଆଉ ହେବ ଆମ୍ଭ ଦୁଃଖ ବିମୋଚନ ?
କେତେ ଦିନ ଆଉ ?
ମାୟା—ନୁହେଁ ବେଶି ବିଳମ୍ବ ତନୟ,
ପଠାଉଛୁ ମାୟା ବଳେ ନୃପ ଦଶରଥ ବନେ ।
ଅଳ ଦିଶି ହେବ କାଳନିଶି,
ହର୍ଷିତ ଭୁବନ ।
ମାୟା ବଳେ ମେଘ ମାଳ—
ଗରଜ ଭୈରବେ,

ରଣରଙ୍ଗେ କରିବେ ନର୍ତ୍ତନ ।
ବିକଟ ପିଶାଚ ହାସେ କମ୍ପିବ ମେଦିନୀ ।
ଆଜ ନିଶା—ଭୂତାନ୍ତ ତାଣ୍ଡବ ।
ସ୍ୱୟଂ ମାୟା ହେବେ ଅବତୀର୍ଣ୍ଣା ରଙ୍ଗ ମଞ୍ଚେ ।
ଛିନ୍ନ କରି ମମତା ବନ୍ଧନ,
ହରିନେବ ମଥାମଣି—
ଅନ୍ଧ ନୟନର ।
ନିର୍ମ୍ମମ ନିଷ୍ଠୁର ଖେଳା ।
ବଳେ ବଳେ ନବ ତରୁ କରି ଉତ୍ପାଟିତ
ଖେଳାଇବ ମାୟା ଖେଳା ।
ମୁହୂର୍ତ୍ତକ ଲାଗି,
ସ୍ନେହ, ଦୟା, ମମତା, ବାତ୍ସଲ୍ୟ,
ନେତ୍ରମୁଦି ବସିବେ ସକଳ ।
ଉତ୍ତାଳ ଲହରି ମଥା ତୋଳଣ ସାଗର,
କରାଳ ବିକଟ ଭୀମ ହୁଙ୍କାର ଗର୍ଜ୍ଜନେ,
ନାଚିବ ମୁହୂର୍ତ୍ତେ
ଗ୍ରାସିବାକୁ ଲକ୍ଷଗ୍ରହ, କୋଟି ଚନ୍ଦ୍ର ତାରା ।
ଚିନ୍ତା ନାହିଁ ବତ୍ସ,
ଆଜି ନିଶି ପ୍ରଭାତ ନୋହୁଣୁଁ
ଅଯୁକ୍ତିକ ଲଭିବ ନିଶ୍ଚୟ ବର, ପୁଷ୍କଳର ହେତୁ ।
ଯାଅ ବତ୍ସ, ଦୂରକର ଚିନ୍ତା ।

ନାରଦ— ଯଥା ଆଜ୍ଞା ଜନନୀ ଗୋ
ନିରତ ଭକ୍ତଙ୍କ ପାଶେ ବନ୍ଦ ଦେବଗଣ

ତପ ପାଶେ,
ହେଉ ତବ ଇଚ୍ଛା ପୂର୍ଣ୍ଣ ।
ନେଉଛୁ ମେଲାଣି ପାଦ୍ମମଳେ ।
ବିଦାୟ ଜନନୀ ।                    ( ପ୍ରଣାମ, ପ୍ରସ୍ଥାନ )

ମାୟା— (ହସି) କୃତାନ୍ତ କପଟ ଖେଳା,
ବଡ ଭଲ ପାଏଁ ।
ଜନନୀ ସମ୍ମୁଖେ,
କରେଁ ସନ୍ତାନର ହତ୍ୟା ।
ବଡ ହସ ଲଗେ ମୋତେ
ଦୁଃଖୀର କ୍ରନ୍ଦନେ ।
ଦେଇ ସତେ ଛଳେ,
କହଣଲେ ।
ଡର ମୋର ଖ୍ୟାତି ତେଣୁ ଭବେ;
ଭୟେ ଭୀତ, ସୁର, ନାଗ, ନର ।
କି ଅସାଧ୍ୟ ମାୟା ନାମେ ମୋର ?
ଯାଏଁ, ଖେଳିବି ମୁଁ ଖେଳା;—
ବିଚିତ୍ର ଅଦ୍ଭୁତ ।
ସ୍ତମ୍ଭିଭୂତ ହେବ ଚରାଚର ।
ପଶୁ ପ୍ରାଣେ ଯେ ଦର୍ଶନେ
ହେବ ଲବେ ଦୟା,
ତରଳିବ ପାଷାଣ ପ୍ରତିମା;
କଠୋର ମାୟାର ଲୀଳା—

ଅଟ୍ଟହାସ୍ୟେ ହସିବ ମୁ ଉଚ୍ଚେଁ, ।
କାହିଁ ଗଲ ସହଚରଗଣ ?
ଆସ, ଆସ,
ଗାଅ ଗୀତ କର ନୃତ୍ୟ,
ବଢାଅ ଆନନ୍ଦ ମୋର,
ଯେ ଆନନ୍ଦେ ମାଉଛଠି
ମନ୍ଥିବ ସାଗର ।
ପ୍ରଳୟ କରିବ ଏ ଜଗତେ ।
କଟାକ୍ଷେ ଖେଳାଇ ଦେବ
ବିଜୁଳୀ ବିଳାଶେ—
ନିର୍ମ୍ମମ କଠୋର ଲୀଳା ।
ଆସ ଗାଅ, ନୃତ୍ୟକର ।

( ମାୟାକୁମାରୀଗଣ ପ୍ରବେଶ )

ଗୀତ ଓ ନୃତ୍ୟ ।

ଖେଳିବା ନୂତନ ଖେଳା ମନ ଆନନ୍ଦରେ
କାଲ ରଜନୀ, ଆମ ସଜନୀ, ମନ ମୋହନୀ-ରେ ।
ଛାଇ ସନେ ଟଳିବ ଆକାଶ ଇନ୍ଦୁ,
ଗରଜିବ, ଫେନିଳ ନୀଳ ସିନ୍ଧୁ,
ମନ ରସିବ, ପ୍ରାଣ ଭାସିବ, ଭବ କାନ୍ଦିବ ରେ ।

ପଟକ୍ଷେପ ।



## ୨ୟ ଅଙ୍କ

### ପ୍ରଥମ ଦୃଶ୍ୟ ।

ଦୃଶ୍ୟ—ସରଜୁ ତୀର, ସମୟ—ରଜନୀ, ମେଘବର୍ଷା, ଝଡ଼, ବଜ୍ରପାତ, ବିଜୁଳି ।

ଏକାକୀ ସିନ୍ଧୁ ଗାଇ ୨ ପ୍ରବେଶ ।

ଇମନ କଲ୍ୟାଣ ।

ଧର ହେ ବାରିଦ ମିନତି ମୋର
ଡାକନା ଗମ୍ଭୀରେ ଗରଜ ଘୋର ।
ଶିହରେ ପ୍ରାଣ, ଭୟେ ଥର ଥର, କ୍ଷୀଣ ଶରୀର ହେ ।
ହେଲଣି ମୁଁ ଅତି ଅଧୀର ହେ ।
ଭୁଲିଯାଅ ଚପଳା ଚମକ ଚାହାଣି,
ଲୁଚାଇ ରଖ ଗୋ ଭୀଷଣ ସାଜ,
ରୁଦ୍ର ଘୁମ୍ଭାଇଲେ, ବଜ୍ର ଗୋ ଫୋଟିବ,
ଏଭୟ ଘୁଞ୍ଚିବ ମୋହର ଗୋ
ଝଡ଼ ପବନ ହେ !
ନିଭାଅ ଏ ଦୀନ କୁଟୀର ହେ ।

(ଅଶ୍ରୁ ମୁଛନ କରି)

ହା ବିଧାତଃ
ଏ କି ଲୀଳା ତବ ?
ଅନ୍ଧ ପିତା ମାତା ମୋର,
ମୁଁ ପୁଣି ବାଳକ !
ଜ୍ଞାନହୀନ ଚପଳ ସ୍ୱଭାବ ।
ଦୟାମୟ ! ଏକି ଖେଳା ?

ଜୀବନଉଷେ ଏକି ଭିନ୍ନ ଛଳ ?
ଏବେ ବର୍ଷା,
ଖଣ୍ଡ ଖଣ୍ଡ ଧବଳ ବାଦଲ
ଅମ୍ବରର ଅବନୀରେ
ଅଭୁଣ୍ଡିରେ ଢାଳେ ଜଳଧାର ।
ସଙ୍ଗେ ପୁଣି,—
ଘନ ଘୋର ଅନ୍ଧକାର ।
ବଜ୍ରର ଦାରୁଣ ଢ଼ାକେ
ଥରେ ଥରେ ଚମକେ ଧରଣୀ ।
ଘଣଘଣେ ଖେଳଇ ଚପଳା ।
ପୂର୍ବବାୟୁ ବହେ ହୁ ହୁ ରବେ ।
କମ୍ପେ ଅଙ୍ଗ ଥରି ଥରି,
ଝଡ଼ପବନେ ଛିନ୍ନ କେଉଁ ପାଦପର ଶାଖା,
ପିଷ୍ଟ ହୁଏ ଅଙ୍ଗେ ।
କଥାଇଲି ପଥ ଘାଟ ।
ଝିଣ୍ଟିକେ ବାଜଇ ଅଙ୍ଗଶାଖ ।
ହାୟ୍ ହର !
ଏକି ତବ ଦୁର୍ଘଟ ଘଟଣା ?
ନମିଳିଲା ଫଳ ମୂଳ କିଛି,
ଜଗତ ଜୀବନ ବର୍ଷା—
ହେଲା ମୋର କାଳ ।
ହର ହର ! ଦୀନବନ୍ଧୁ ,




କେଉଁପରି ଚାଲିବେଲ ଦୁଃଖ ?—
ଦରିଦ୍ରର କାହିଁ ପ୍ରତି କଠୋର ଯାତନା ?
ଦରିଦ୍ର ଜୀବନେ କାହିଁ କଠୋରର ସୃଷ୍ଟି ?
କିମ୍ବା,—
ଏ କଠୋର ଅଧିକାରୀ ଦରିଦ୍ର କେବଳ ?
ନାହିଁ ଡର, ଅନାହାରେ ମୋର ।
କାଲୁ ହରି,
ବୃଦ୍ଧ ପିତା ମାତା, ଅସହାୟ ସନ୍ତାନ,
ଉପବାସେ ଅତ୍ୟନ୍ତ ଆକୁଳ ।
ଦୟାନିଧି,
କାହିଁ ହେଲ ପ୍ରତିକୂଳ ବିଧି ?
ସାରାଦିନ ବୁଲି ବୁଲି
ନପାଇଲି କିଛି ।
ଆଶାର ଭରସା କରି
ଅସିଥିଲି ପୁନଃ ।
କାଲୁ ହାୟ !
ଆସିଲା ରଜନୀ,
ମେଘର ଅନ୍ଧାରେ ମିଶାଇଲା ନିଜ ଅନ୍ଧକାର ।
ଫଳଆଶା ବିଫଳ ହୋଇଲା ।
ଏଇକି ବିଶ୍ୱର ଭବ ପ୍ରଭୋ !
ଭାଗ୍ୟ ଫଳାଫଳ ଏଇକିରେ ? ( ବିଦ୍ୟୁତାଲୋକ )
( ଚମକି ) ଏହିତ କୁଟୀର,

ଦେଖାଯାଏ ବିଦ୍ୟୁତର-
କ୍ଷଣିକ ଚମକେ ।
ଚମକେ ପରାଣ ମୋର
ଏ କୁଟୀର ହେରି !
ହା ପିତଃ, ହା ମାତଃ,
ଗୃହେଁ ରହିଥିବ ପଥେ ।
କି ବୋଲିବେ ?
କିବୋଲି ମୁଁ ନିଶ୍ୱାସ କରିବି
ଦେଖି ଜନେ ? ( ଅଶ୍ରୁ ମୋଚନ )
( ସହସା ବିଦ୍ୟୁତ, ମେଘଗର୍ଜ୍ଜନ ଓ ବଜ୍ରପାତ )
ନେପଥ୍ୟେ ଅନ୍ଧମୁନି—କାହିଁ ଗଲୁ ଅନ୍ଧଳର ହାଧି,
କାହିଁ ବାବା, କାହିଁ ସିନ୍ଧୁ,
ଛାଟେ ମେଘ, ଗରଜେ ଚଡ଼କ;
କାହିଁ ଗଲୁ ବାପ ?
କେତେବେଳୁ ଯାଇଛୁ ତ ବନେ ।
ଆଜ ଏତେ ବିଳମ୍ବ କହେତୁ ?
ସିନ୍ଧୁ—( ବକଳେ ) ହାୟ ବୃଦ୍ଧ ପିତା ମାତା,
ଅଛି ବଳୀୟାନ ପୁତ୍ରସ୍ନେହ
ମନେ ତେଣୁ ଜାଗଇ ସନ୍ଦେହ ।
ଆସେ ଭୀତି କ୍ଷଣେ କ୍ଷଣେ ।
କିମ୍ବା ନୁହେଁ ଅସମ୍ଭବ,
ବିପଦେ ବା ବିଷମ ସଙ୍କଟେ-

ମଳୟଅଙ୍କିତ-ସ୍ନେହ ଛବି
ମାଧୁରୀ ଗୁଣେ, ଜୀବନ୍ତ ସମାନ ଫୁଟେ ।
ବିଧିର ବିଚିତ୍ର ଖେଳା
ଦେଖେଁ ଏହିଠାରେ ।
ତେଣୁ ଆଜ ବିଧାତାର
ଏ କଠୋର ଲୀଳା ।
ନନ୍ଦନୁହେଁ, କରୁ ପ୍ରଶ୍ନ ।
ଶୁଷ୍କମୁଖେ, ଶୂନ୍ୟ-କରେ
ଆସ ମୁଁ କହିବ ଯତେ,
କ୍ଷୁଧାତୁର ଜନନୀ, ଜନକେ ?
ବୃଷ୍ଟିବଅ ହର ( ମେଘଗର୍ଜନ ବିଜୁଳି ଇତ୍ୟାଦି )

ନେପଥ୍ୟେ—ମୁକ୍ତପରୀ ଓହୋ ! ଓହୋ ! ଏ କି ହେଲା ? କାହିଁ ଗଲୁ,
ଆସୁ ବାବା, କୋଳେ ଆସ !

ଟିକୁ— କାହିଁ ମାତା,
କରୁଛ ରୋଦନ,
କାହିଁ ପିତା ; କର ହାହାକାର ?
ଦେଇ, ଅସିଛି ମୁଁ । (ପ୍ରସ୍ଥାନ)

ନେପଥ୍ୟେ ମୁକ୍ତପରୀ—ଟିକୁ ! କାହିଁ ବାବା,
ତୋର ବିଳମ୍ବ ଆଜ ?
( ସହସା ପଟପରିବର୍ତ୍ତନ )

———*———

## (୧ମ ଗର୍ଭାଙ୍କ)

କୁଟୀର—ଅନ୍ଧମୁନି ଓ ଅନ୍ଧମୁନି ପତ୍ନୀ ବସିଥିଲେ ।

ସିନ୍ଧୁର ପ୍ରବେଶ

ମୁନି— ସିନ୍ଧୁରେ, (ଅଶ୍ରୁଜଳ ସିନ୍ଧୁର କରକଣ୍ଠ ଦେଲେ)
ତର ଅନ୍ଧ ପିତା ମାତାଙ୍କୋର,
ହରାଇଛୁ ନୟନର ତାରା ।
କାଲୁ ଧନ, ଅନ୍ତର ନୟନେ
ଏ ଅନ୍ଧ, ଅନ୍ଧୁଣୀ—
ଗୃହନୟନର ତାରା ତୁହ ।
ନଦେଖି ଏ ଚନ୍ଦ୍ର ମୁଖ ତୋର,
ମନପ୍ରାଣ ଅତ୍ୟନ୍ତ ଆକୁଳ ।
ଆସ ଚନ୍ଦ୍ର, ଆସନାଥ,
ଅନ୍ଧ ଆଖି ଉଜ୍ଜଳ ଆଲୋକ !
ଆସୁରେ ନୟନ ତାରା !
ଆସୁ, ଆସୁ, ଉଠି ଆସ କୋଳେ !
ଆସୁ ବାବା, ( ହସ୍ତପ୍ରସାରଣ କଲେ )

ସିନ୍ଧୁ— ପିତା ! କ୍ଷୁଧାରେ ଆକୁଳ ତୁମ୍ଭେ,
ତପସ୍ୟାରେ ପୂର୍ଣ୍ଣ,
ଜୀର୍ଣ୍ଣ ଶୀର୍ଣ୍ଣ ଅଙ୍ଗ ।
କାତର ହୋଇବ ଭାରେ ମୋର ।
ଚରଣେ ମୋତେତ ଆଦରେ
ଧରିଅଛ କୋଳେ;—

ସୁତସ୍ନେହ ଆଲିଙ୍ଗନ ଦାନେ ।
ତବ ଦୟା,—
ଆଦର ସୋହାଗେ ଅଙ୍କେ,—
ଅହରହ ଖେଳୁଛି ମୁଁ ଦୋଳ ।

ପରୀ— ବାବା, ବାବା, ଭିଜୁଛି କୋମଳଅଙ୍ଗ, ( ସିନ୍ଧୁଦେହ ଆଉଁସି )
ଗୈରିକ ବସନ ।
କେଶ ପାଶ ଭିଜି ଜଳଝରେ ।
ଆସ ବାବା, ଅଞ୍ଚଳେ ମୁଁ ଦିଏଁ ପୋଛି
ବରଷାର ବାରି ।
ଦୃଷ୍ଟି ନାହିଁ, ଦିଶୁନାହିଁ କିଛି ।
କାହିଁଦେ ମୁଁ ଦିଏଁ ପୋଛି । ( ଅଞ୍ଚଳ ଧେନବା )

ସିନ୍ଧୁ—ନାଇଁ, ମା, ଥାଉ ମୁଁ ନିଜେ ପୋଛି ହେଉଛି । ( ପୋଛିହେଲେ )

ପରୀ— ଅନ୍ଧନୟନ ଅଞ୍ଜନ, ଜୀବନର ନିଧି ?
ଏକ କଥା ମୁଖେ ତୋର ଧନ ?
ନିଜେ ତୁ ପୋଛିବୁ ଅଙ୍ଗ ?
ଅଜ୍ଞହେଲେ ପଛେ, ଜନନୀ ମୁଁ ତୋର ।
ସହିବ କି ଦେଖି ଏହା, ଜନନୀର ପ୍ରାଣ !

ମୁନି— ସିନ୍ଧୁରେ ! କ୍ଷୁଧିତା ଅତ୍ୟନ୍ତ ମାତା ତୋର,
କ୍ଷୁଧିତ ମୁଁ ମଧ୍ୟ ।
କାହିଁ ?
କି ଫଳ ଆଣିଛୁ ବାବା,
ଦିଅ ଦିଅ ଜନନୀ ପିଅରେ । ( ହସ୍ତ ପ୍ରସାରଣ )

ସିନ୍ଧୁ— (ଚମକି ସ୍ୱଗତ ବକିଲେ) ସ୍ତବ୍ଧହୁଅ, ସ୍ତବ୍ଧହୁଅ କର୍ଣ୍ଣ
ଅନ୍ଧ ହୁଅ ନେତ୍ର !
ବଜ୍ର ! ପଡ ମୋ ମସ୍ତକେ !
ଭୀମ ଭୂମିକମ୍ପେ ଯାଉ ସ୍ୱର୍ଗ ରସାତଳେ,
ହେଉରେ ପ୍ରଳୟ !
ହାୟ ବିଧି, ଏକି ହେଲା ?
କିବୋଲି ଉତ୍ତର ଦେବି ମୁଁ ?
କି ବୋଲିବି ?
କ୍ଷୁଧାରେ ବିକଳ ପିତା ମାତା ;
ଅତି ହତଭାଗ୍ୟ ମୁହିଁ ।
ନପାରିଲି ଶାନ୍ତ କରି ସେହୁହଙ୍କ ଜ୍ୱାଳା !
କ୍ଷଣେ ପାହୁଛି ରାତି ।
ଏହତ ! ପ୍ରସାରିତ ପିତାଙ୍କର କର ।
କି ଦେବି ଏହାତେ ?
ବିଧିରେ ! ନିତାନ୍ତ ନିଷ୍ଠୁର !
ଏହିକି ହେ ବିଧାନ ତୁମ୍ଭର ?
ଘୋର ଅବିଚାର, ଘୋର ଅବିଚାର ।
ଏହି ଗୁଣେ ଗୁଣବାନ ତୁମ୍ଭେ ?
ଏହି ଗୁଣେ ବନ୍ଦ ଏ ଜଗତେ ?
ଛିଛି ! କିବା ଅପରାଧେ,
ଅପରାଧୀ ମୁହିଁ ?
ଜୀବନେ ଜୀବିତ ଥାଉଁ ପିତୃମାତୃ—

ଜନ୍ମାନ୍ଧ ପିତା ମାତା
ପୁତ୍ରହୀନ ମୋର ?
ଓଃ ବିଷମ ଏ ଜ୍ୱାଳା ! ବଜ୍ରସମ ବାଜେ ବୁକେ
ମୁନି— କାହିଁ ବାବା ! ବଢ଼ଯେ ଜଠର ଜ୍ୱାଳା ।
ଶୂନ୍ୟ ଲାଗେ ଏଭିନ ଭୁବନ ।
କାହିଁ ଦିଅ ? ଫଳ ଦିଅ ।
ସିନ୍ଧୁ— ( କାନ୍ଦି କାନ୍ଦି ) ବାବା, ବାବା ( ପଦଧାରଣ )
ମୁନି— କି ବାବା ? ( କୋଳେଇ ନେଲେ )
ସିନ୍ଧୁ— ଫାଟିଯାଏ ଛାତି
ଯାତନା ଅତ୍ୟନ୍ତ ।
ନିତାନ୍ତ ଅଧମ ମୁହିଁ ।
ଅପରାଧୀ ଶ୍ରୀଚରଣେ ତବ ।
ଘୋର ପାପୀ, ପାପ ଦେଖି ଭସ୍ମେ
ବଜ୍ର ଯୁଦ୍ଧା ନପରଶେ ମୋତେ ।
ପିତା, ପିତା ! କି କରିବି ?
କି ହେଲାରେ ? ବିଧି !
ଧିକ ଧିକ, ଶତ ଧିକ ମୋତେ ।
ହୀନ ପ୍ରାଣେ କିବା ପ୍ରୟୋଜନ ?
ମୁନି— କି ହେଲାରେ ନୟନର ତାରା ?
କି ଦୁଃଖରେ ତୋର ?
ଏଅନ୍ଧ ଅନ୍ଧୁଣୀ—
ତେଜନ ପିଣ୍ଡ ଜୀବନର ଛନ୍ଦ;

ତୋମ୍ଭ ଶବ୍ଦୁ ଏକାକୀ ଶୁଣିଲେ
ବାବା ! ଘୂରି ଉଠେ ମଥା ,
ଫାଟିଯାଏ ଗ୍ରୁତ ।
କି ହେଲାରେ ବାବା ?
ଅନ୍ତୁନନ୍ଦା କରୁ କପାଁ ମିଛେ ?

ସିନ୍ଧୁ— ବାବା, ବାବା, କି କହିବ ?
ବିହି ବାମ !
ଫାଟିଲା କରମ, ମୋର
ନପୂରିଲା ଆଶା ।
ବନଯାଗ୍ର ବନେ ବନେ
ଭ୍ରମି ପ୍ରାଣପଣେ,
କାହିଁ ହେଲେ, ନମିଳିଲା
ଫଳର ସନ୍ଧାନ ।
କିଛି ତ ପାଇଲି ନାହିଁ ।
ବାବା, କହେବ ହେ ? କି କହିବ ?
କ୍ଷୁଧିତ ଯେ ତୁମ୍ଭେ,
କ୍ଷୁଧିତା ଜନନୀ ।
ଛି, ଛି, କକଲି ମୁଁ ପାପୀ,
କ୍ଷୁଧିତ ପିତା ମାତାଙ୍କୁ
ନ ଦେଲି ଅହାର ।
ଅହା ! ଏହା ମଧ୍ୟ ଥିଲା କର୍ମେ ମୋର ?
ପିତା ! ପୁତ୍ର ନୁହେଁ ମୁହିଁ, ଶତ୍ରୁ !

ପୂର୍ବକୃତ ପାପଫଳେ
ଉପବାସେ ରଖିଲି ତୁମ୍ଭଙ୍କୁ ।
ଅହୋ । ଏହି ପାପେ ପୁଣି,
ହାୟ, ହାୟ, ନଜାଣେ ମୋ କର୍ମେ
କି ଘୋର ନରକେ ଅଛି ବାସ । (ଅଶ୍ରୁ ମୁଞ୍ଚନ)

ମୃ-ପରୀ— ବାବା, ପାଇନାହୁଁ ଫଳ ?
ଏଥିଲାଗି ବିକଳ କାହିଁକି ?
ଅଞ୍ଚଳର ନିଧି !
ତୁ ତ ମୋର ଅସିନ୍ଧୁରେ ଶୁଦ୍ରେ ।
ଏଇତ ଯଥେଷ୍ଟ ।
ମିଶିଅଛୁ ତୋ ବଚନେ
ଅମୃତ ମଧୁର ।
ବନଫଳ ଲାଗିବକି
ପାଶେ ଛାର ?

ସିନ୍ଧୁ—(କାନ୍ଦି) ମା ଗୋ ।
ସ୍ନେହେ ଗଢା ହୃଦ ।
ସ୍ନେହମୟ ପିତା ମୋର ।
ଅଗାଧ ସେନେହେ
ବାନ୍ଧିଛ ଅଧମେ ।
ସେହି ହେତୁ କହୁଛ ଏସନ ।
କିନ୍ତୁ ମାଗୋ,
ଉପବାସୀ ତୁମ୍ଭେ ଦୁହେଁ

ନପହେ ମୋ ହ୍ରସ୍ବା
ମା ! ମା ଗୋ ! କି କରିବ ?
ଅଦ୍ୟାପି ରଜନୀ ନୁହେ ଶେଷ ।
ଅନେକ ସମୟ ଅଛି ।

ମୃ, ପତ୍ନୀ— ଆଉ ବୃଦ୍ଧ ବାବା !
ଶୋଇ ଗଲେ ପାହି ଯିବ ।
ପଲକ ପରି ଲାଗିବ,
ଜଣାଯିବ ନାହିଁ ।
ଉଦିଲେ ତପନ ।
ପ୍ରଭାତ ହୋଇଲେ, ଯିବୁ ଫଳଆଣି ।
ଅଧୀର କାହିଁକି ?

ସିନ୍ଧୁ— ମା ! ବାରଣ ନକର ।
ଯାଏଁ ଆଉଥରେ ।
ଦେଖେଁ ! ଚେଷ୍ଟାକରି
ଭାଗ୍ୟେ ଯଦି ମିଳେ କିଛି ଫଳ ।

ମୃ, ପତ୍ନୀ— ଛେଳ ଏ ଭାବନା,
ଆସ ବାବା, କୁଟୀରେ ତୁ ଆସ ।
ନୟନ ପଙ୍ଖାଳି,
ଅଶ୍ରୁଳେ ପୋଛାଇ ତୋତେ ଅଞ୍ଚଳ ନଧିରେ !
ଭୁଲିଯିବ ଉପବାସ ବାଧା ।
ଡରନାହିଁ ଆସ ଆସ ବାବା, ( ହାତ ବଢାଇଦେ
( ହସ୍ତଧରି ସିନ୍ଧୁ ବୁଢ଼ୀଙ୍କୁ ନେବା

( ଭିକାରିଣୀମାନେ ଉଠିଲେ । )

( ଯାଉଁ ଯାଉଁ ) ମୁନି—ସିନ୍ଧୁରେ !

ଗଲା ମାଲା ତୁ ଅମୃତ,

ଦରିଦ୍ରର ଧନ ।

ରତ୍ନନିଧି ! ପାଶେଥିଲେ ତୁହି

କଦାଚିତ ଶୋକ, ଶୋଷ ଜାଲା ?—

ଭୁଲି ଯିବୁଁ କାହିଁ ।

ଚାଲ ବାବା,

କୁଟୀରେ ତୁ ଅସ । ( କୁଟୀର ଭିତରକୁ ଗଲେ )

——*——

୨ୟ ଦୃଶ୍ୟ—ବନପଥ ନିକଟ । ବନବାସିନୀଗଣ ।

ମେଘଗର୍ଜ୍ଜି—ଅଳ୍ପ ଅନ୍ଧକାର ।

(ଏ) ଥରେ ଛାଡ଼ ଗୁଡ଼ ଘନ ଗରଜେ,

ଛନ ଛନ ସନେ ବିଦ୍ୟୁ ସରଜେ, ସରଜେ,

ଘନ ଗମ୍ଭିରେ ଗା—ଏ, ଯିବ ଯା—ଏ ।

କମ୍ପିତ ଘନ ଘନ, କର୍ମ୍ପିତ ଗିରି ବନ,

ଛାଡ଼ ଶ୍ୱାସଶର ବରଜେ, ବରଜେ, ବରଜେ, ବରଜେ । ( ନାଚି୨ ପ୍ରସ୍ଥାନ )

——○*○——

ତୃତୀୟ ଦୃଶ୍ୟ—ଅରଣ୍ୟ, ରାତ୍ରୀ

( ବିଦୂଷକ ପ୍ରବେଶ )

ବିଦୂଷକ—(ଭୀତହୋଇ ଅଣ୍ଡାଳ ଅଣ୍ଡାଳ) ମ, ମ, ମ, ମହାରାଜ ରକ୍ଷାକର ।
ଧର୍ମ୍ମ, ହେ ଧର୍ମ୍ମ, ତିନି ସନ୍ଧ୍ୟାରେ ତୁମ ମୁହଁରେ ପାଣିଦେବି । ରଖ,

ହେ ଧର୍ମ, ମାନମୟୀ ବ୍ରାହ୍ମଣୀର ଏକ ମାତ୍ର ସନ୍ତକ, ଏକମାତ୍ର ଅକ୍ଷି,
ଦ୍ୱିତୀୟ ନାସ୍ତି, ରକ୍ଷାକର ମୋତେ, ଧର୍ମ ! ମହା-ରାଜ-ଦେ-ମ, ମ,
ମ, ମ, ମ—

ଦଶରଥ—( ବ୍ୟସ୍ତଭାବେ ପ୍ରବେଶ ହୋଇ ) ଓଃ, କାହିଁକି ଏତେ ପାଟି କରୁଛ ?. ଏମିତି ପାଟିକଲେ ଯେ ଜନ୍ତୁ ପଳାଇବେ ! ତୁନ ହୁଅ, ତୁନି ହୁଅ ।

ବିଦୂଷକ—ଓଃ, ମୁଁ କି ଖୁସିରେ ପାଟି କରୁଛି ? ପାଟିଟା ଟୁଏଁ ଛଏଁ ହୋଇ ଯାଏ, ଦିହ ତ ଥରି ଉଠୁଛି । ଦେଖ, ଛାତିରେ ହାତ ମାର । ଦେଖ, ମୁଁ ଯାଏଁ, ସଖା, ମୁଁ ଯାଏଁ, ଏଠୁ ପଳେଇଲେ ବଞ୍ଚେ ।

ଦଶ—ଏତେ ଭୟ କାହିଁକି ସଖା ! ଥୟଧର, ମୁଁ ତ ଧନୁଶର ଧରି ତୁମ ପାଖେ୨ ଅଛି, ଛାଡ଼ ଭୟନାହିଁ ।

ବିଦୂ—ନାହିଁ ବୋଲି କହିଲେ କି ଚଳେ ? ତୁମେ ଯେତେ କହ ଭୟନାହିଁ, ମୋର ତ ମନଟା ମାନୁନାହିଁ ।

ଦଶରଥ—କେମିତି ? ମାନୁନାହିଁ ?

ବିଦୂଷକ—କେମିତି ଆଉ ଫେର କଣ ? ଏଠି କେମିତି ବୋଲି କହିଲେ ତମ ମହାରଜାର ହୁକୁମ ଅଉ ଚଳିବ ନାହିଁ । ଛଡ଼ିଥିବାକୁ ଅଉ ଉପାୟ କଣ ? ଛାଡ, ଛାଡ ମୁଁ ଯାଏ ।

ଦଶରଥ—ଫେର ସେଇ କଥା ?

ବିଦୂଷକ—ହିଁ, ଆଉ କଅଣ ଏଠି ବେଦଚର୍ଚ୍ଚା କରନ୍ତୁ ? ଯାହାର ବ୍ୟଥା ତା ମନ ଜାଣେ, ଯାହାର ଯେଉଁଠି ବ୍ୟଥା ସେ ସେଇଠାରେ ଘୋଡେଇ ରଖେ, ଜାଣ ?

ଦଶରଥ—ହିଁ, ଜାଣେ, ବାଳ ତୁମେତ କାହିଁ ପେଟଟି ଘୋଡେଇ ନାହିଁ ସଖା ? ପେଟ ଉପରେ ତ ହାତଦେଇ ନାହିଁ ?

—ଅରେ ପେଟ ? ପେଟକି ଆଉ ଅଛି ? ତାର କୋଉଠି
କୋଉ କୋଣରେ ପଡ଼ିଛି, ଏ ବ୍ୟଥା ଯେ ଜୀବନରେ ଲାଗୁଛି ।
ଜୀବନରେ ବଞ୍ଚିଥିଲେତ ପେଟ ? ( ଉଠେ ) ଓ ଯାଉଛି ।

ଦଶ—( ବଟୁଙ୍କ ପିଠିରେ ହାତ ଦେଇ ) ଓଃ ଫେର ଚଳାର ?

ବଟୁ—ଆଉ କି କରିବ ସଖା ? ତୁମେ ପଛେ ମୋ ସାଙ୍ଗରେ ଚାଲ;
ନୋହିଲେ ନିଶ୍ଚେ ବ୍ରହ୍ମହତ୍ୟା ହେବ । ( କାନ୍ଦିଲାପରି ) ଏ ଗୋ,
ବ୍ରାହ୍ମଣୀରତ ଆଉ କେହିନାହିଁ ଗୋ, ମୁଁ ବୋଲି ଗୋଟିଏ ।
ମହାରାଜ ଏଁ କି ହେବ ? ତାର କହିବ ? ମୁଁ ଯାଏଁ—ପଳାଏଁ ।

ଦଶ—ଆରେ ଆସୁଛ ? କୁଆଡେ ଯିବ ? ଅଉ କେମିତି ବା ଯିବ ? ମୁଁ
ତ ପାଖେ ଅଛି । ନିତବେଳ ଡରୁଛ, ଏକୁଟିଆ ପଳେଇବ କିମିତି ।

ବଟୁ—( ଆଶ୍ଚର୍ଯ୍ୟ ହୋଇ ) ଏଁ ହିଁତ, ସତତ, କେମିତି ଯିବ ? ଯାଇ
ପାରୁ ନାହିଁ କି ରହିପାରୁ ନାହିଁ । ( କାନ୍ଦକାନ୍ଦ ) ଓ ହୋ !
ମୁଁ କାହିଁକି ଆସିଲି ? ଆସିବା ଆଗରୁ ଜୀବନଟା ଯାଇଥିଲେ ଭଲ
ହୋଇଥାନ୍ତା ।

ଦଶରଥ—(ହସି) ଦେଖିତ ! ସେଇ ଜୀବନ ଲୋଭରେ ପଳେଇ ଯିବାକୁ
ବସିଛ । ଫେର ସେଇ ଜୀବନ ଯିବା କଥା କହୁଛ ? କାହିଁକି
ତେବେ ଆସିଲ ?

ବଟୁ—ଘୋଡା ପେଟର ଦାଉରେ । ନୋହିଲେ କି ଶଖ ସାଦକରି
ଆସିଥିଲି ? ଦେଖିବ ନାହିଁ ତ ଯଦି ଏଇଥର ବଞ୍ଚେ, ରାଜଧାନୀ
କି ଗଲେ ଏ ପେଟରେ ଏକାବେଳେ ହୁତାଶନ ଲଗାଇ ଜଳେଇ
ଦେବି । ( ନେପଥ୍ୟେ ପଦଶବ୍ଦ ଶୁଣି )
( ଥରି ) ଏ ବାବା, ଆଇଲା ଆଇଲା, ଏଇ

ଆଇଲା ଧରିଲା, ହାତ ବଢେଇଛି ( ଦଶରଥଙ୍କୁ ଛୁଣ୍ଣାଇ ) ସଖା ! ଦେଖ ଦେଖ, କେଡ଼େ ବଡ ହାତ ? ଦେଖୁଛ ନା ? ଏଁ ମୁଁ ମଲି ।

ଦଶରଥ—(ବିରକ୍ତ ହୋଇ) କହୁଛି ଚୁପ ହୁଅ ବୋଲି—

ବଟୁ—ମୁଁ କ ଚେଷ୍ଟା କରୁନାହିଁ ? ବାକ ହେଲେତ, ( ଭୟରେ ) ସଖା, ସଖା, ଦେଖ, କେଡ଼େ୨ ଆଖି ! ଏଇ ଧଇଲା, ରଖ, ରଖ, ସଖା, ଚାଲମୋତେ ରଥରେ ଛାଡ଼ିଦେଇ ଆସ ।

ଦଶରଥ—ଓଃ, ତୁମକୁ ଛାଡ଼ି ଆସିଲେ ରକ୍ଷା ।

ବଟୁ—ଧର୍ମ, ରକ୍ଷାକର ଏତେବେଳେ ଗୁହାରି ଶୁଣିଲ । ହଁ ସଖା ଚାଲ । ଟିକିଏ ଧରି୨ ନିଅ ମୋତେ । ମୁଁ ସେଇ ରଥ ଉପରେ ବସି ଆଖି ମୁଦି ଶିକାର ଦେଖୁଥିବି । ( ପୁଣି ପଦଶବ୍ଦ ଶୁଣି ) ସଖା, ସଖା, ଧର, ଧର, ଏଇ ମୁର୍ଚ୍ଛା ଗଲି—ମୁର୍ଚ୍ଛାଗଲି ।

ଦଶରଥ—ଓଃ ଅଉ ବ୍ୟସ୍ତ କରନା, ଚାଲ, ଚାଲ, ଗୋଟିଏ ଗଳଗ୍ରହ ତୁମେ ।

ବଟୁକ—ହଁ ସଖା; ଠିକ୍ ଠିକ୍ ( ହାତ ବଢାଇ ଦଶରଥଙ୍କୁ ଛୁଣ୍ଣାଇ ଥରି୨ ପ୍ରସ୍ଥାନ )

——○✻○——

୩ ୟ ଦୃଶ୍ୟ ।

ଋଷି—ଅରଣ୍ୟ—ଗୀତ ଗାଇ୨ କୁମ୍ଭହସ୍ତେ ସିନ୍ଧୁ ପ୍ରବେଶ ହେଲେ ।

ବେହାଗ ।

ବନବାସୀ ଫଳ ଆଶୀ
ଭାସିଲି ମୁଁ ଦୁଃଖ ନୀରେ

ତରୁ ଲତା ବନ ଗିରି
ତଳେ ଦୟା ନାହିଁ କରେ ?
ଅନ୍ଧ ପିତା ମାତା ନେତ୍ରୁ
ଧାରା, ହା, ନୀର ଝରେ ।
ହରି, ହରି ଦୀନବନ୍ଧୁ ନାମେ କଳଙ୍କ ଲାଗିଲା !
ଦାତା ହୋଇ କୁଣ୍ଠି ହେଲ
ଏ ଦୁଃଖ କହେଁ କାହାରେ ?

---*---

( ଅଶ୍ରୁ ମୁଞ୍ଛନ କଲେ )

ଫଳ ନାହିଁ
ଅନାହାରେ ଜଳପାନ ।
ଲଭେକି ଜଠର ଜ୍ୱାଳା—
ଖାଲି ଜଳପାନେ ?
ତେବେ କିପାଁ ରହନ୍ତା ଭାବନା ?
ଧିକ ମୋତେ,
ମୋହ ହେତୁ ପିତାମାତା
ଲଭିଲେ ଏ ଦୁଃଖ ।
କି କରିବି ? ଉପାୟ ବିହୀନ ।
ଯାଏଁ ଆଣେ ଯାଇ
ସରଯୂର ବାରି । ( ଅଳ୍ପ ଅଗ୍ରସର ହୋଇ )
( ଅଳ୍ପ ନୀରବ ରହି, ତାଚ୍ଛଲ୍ୟ ହାସ୍ୟ ସହିତ ) ;
ହୁଁ ! ସଲିଳେ କି ଯାଏ କ୍ଷୁଧା ?—
ବରଂ ବଢେ !

ହାୟ ! ହାୟ ! ବିଧି ବିଡମ୍ବନା !
ଦୟାମୟ ବିଧାତାରେ !
ଭଲ ଦୟା ଦେଖାଇଲ ଆଜ ।
ନାମେ ତୁ ଦୟାଳୁ ମାତ୍ର କର୍ମେ ବିପରୀତ ।
ଶୁଣିଛି ମୁଁ ପିତୃ ମୁଖେ ।
ତୁମ୍ଭେ ପରା ଜଗତର ପିତା ?
ଜୀବର ବ୍ୟଥାରେ ପାଅ ବ୍ୟଥା ?
ସେହି ତୁମେ ?—
ତୁମେ ପ୍ରଭୁ ଜୀବ ଅନ୍ନଦାତା ?
ଦୟାମୟ ତୁମେ ?
ଜୀବର ଜୀବନ କର୍ତ୍ତା ?
ଏହି ତାର ପ୍ରମାଣ କି ପ୍ରଭୁ ?
କ୍ଷୁଧାରେ ପୀଡ଼ିତ ପିତାମାତା,
ରହିବ କି ନରହିବ ଜୀବ ।
ଦୟାମୟ ନାମେ କିପାଁ
ଲଗାଅ କଳଙ୍କ ?
କି କଠିନ ହୃଦୟ ତୁମ୍ଭର ?
(ଅଳ୍ପ ନୀରବ ରହି) ନା, ନା, ମିଛେ କାହିଁ ଦୋଷିବି ମୁଁ ବିଧି !
ହତଭାଗ୍ୟ ଏଜଗତେ ମୁହିଁ ?
କାର୍ଯ୍ୟ ନାହିଁ ଆଉ ଛାର ପ୍ରାଣେ ।
ପିତା ମାତା ପ୍ରାଣ ଯିବା ପୂର୍ବେ
ବିସର୍ଜନ ଦେବି ପ୍ରାଣ,

ସରଯୂ ସଲିଳେ । (ଅଗ୍ରସର)
ସରଯୂର ତଳ୨ ନୀଳ ଜଳ ରାଶି
କଳକଳ ଆବାହନ ଗୀତଗାନେ,
ଲହରୀ ସହିତ ଟେକି ମଥା,
ଆଦରେ ଡାକଇ ମୋତେ କରିବାକୁ କୋଳ ।
ଯିବ, ମିଳିଯିବ ଅଙ୍ଗେ ।
ମରିବା ଆଗରୁ ମୋର ବୃଦ୍ଧ ପିତା ମାତା
ତେଜବ ଜୀବନ । (ପୁନଃ ଅଗ୍ରସର ହେଲେ)
( ଭାବି ) କି କହିଲି ?
ନା, ନା, ନପାରେ ତ ମରି ।
କିପରି ମରିବ ?
ମରିଲେ ମୁଁ,
ଅନ୍ଧ ପିତା ମାତା ମୋର ନିଶ୍ଚୟ ମରିବେ ।
ନା,ନା, ହେବନାହିଁ ଆତ୍ମଘାତ ।
ଥାଉ ଥାଉ ପ୍ରାଣ,
କିପରି ମୁଁ ଦେବରେ ଭସାଇ—
ଅନ୍ଧ ଜନନୀ ଜନକେ,
କାଳ ସ୍ରୋତ ଜାହ୍ନବୀ ଗରଭେ ?
ଦେଖେଁ, ବିଧାତାର ସୃଷ୍ଟି !
ତେଷ୍ଟାହରେଁ ଆଉଥରେ !
ପାଇବ ବା ଫଳ ମୂଳ କିଛୁ !
ନାହିଁକି କେ ଦୟାଳୁ ଏ ବନେ ?
ଯାଏଁ । (ଅଗ୍ରସର ହୋଇ )

ରଜନୀ ଗୋ; ଯାଗି ଉଠ ।
ଦେ 'ମା ତାଙ୍କ ପ୍ରଷ୍ଣତ ତପନେ ।
ତୁମ୍ଭ ପିତା ମାତା ତେଣେ କ୍ଷୁଧାରେ ଆକୁଳ,
ଭୁଲ ଦେ'ମା ଅକୁଳ ସାଗରେ ।
ଅହୋ ! କଠୋର ବଧିର ବଧି, ନପାରିବୁ ଏଡ଼ୁ ?
ଭୟେ ତେଣୁ ଅସମୟେ
ନପାରୁଛୁ ଗୃହଁ ?
କିବା ଭୟ ଜନନୀ ଗୋ ?
ସେ ବିଧି ନଳଙ୍କୁ ମାଙ୍କ କାଳେ ଯେ ଲଙ୍ଘିଲ ।
କିବା ଭୟ ସେ କାଳକୁ ତୋର ?
କ୍ଷୁଧାନଳେ ହୁଏ ଜୀବହତ୍ୟା ;—
ତାହା ଯଦ ସହେ ବିଧି ପ୍ରାଣେ
ତା ବିଧାନ କେ ଶୁଣିବ କହ ?
ଯାଗ ମା ଆନନ୍ଦମୟି –
ଗଭୀର ଯାମିନୀ,
ଉଠମା, ଉଠମା,
ନାହିଁ କି ମା ତୋ ଅନ୍ତରେ ସ୍ନେହ
ମୋ ଜନନୀ ସମ ?
ଯେ ସେନେହ ବଳେ ଦିନଦିନ ଉପବାସୀ–
ମାତା ନୟନରୁ, ଦୂରେ ଥାଉ ଝରିବାର
ତପ୍ତଲୁହ ଧାର;
ତନୟେ ହରେଖି ତା'ର
ଆସେ ଶତ ସିଂହାତେଜ ।

ଫୁଟିଉଠେ ବିଷାଦ କାଳିମାସରେ ପଦ୍ମ-ଶତଦଳ ।
ଆଶ୍ୱାସଇ କୋମଳ ବଚନେ !
ନାହିଁ କିଗୋ ସେ ସ୍ନେହ ମା,
ଅନ୍ତରେ ତୋହର ?
ନା, ନା, ମିଥ୍ୟା !
ଅଛି, ଅଛି, ନୋହିଲେ କିପାଁଇ ?
ଅସଂଖ୍ୟ ସନ୍ତାନ ମାଗୋ !
ବକ୍ଷେରେ ପଡଇ ଶୋଇ
ସ୍ନିଗ୍ଧ କୋଳେ ତୋର ?
(ହସ୍ତପ୍ରସାରି) କଣା ମାତ୍ର ସେହିସ୍ନେହ ଢାଳଦେ ଜନନୀ !
ଚାଲ ଯାଅ, ଯାଅ ଚାଲ !
ଉଠୁ ରବି ପୂର୍ବରଙ୍ଗ ମେଘେ !
ଫୁଟି ଦେଇ ଆଲୋକର ରେଖା,
ଦେଖା ଦେଉ ଅରଣ୍ୟର ଗୁରୁ.ଗମ୍ଭୀର !
ଖୋଜି ବୁଲିବି ଗୋ ମାଗୋ, ଆଣେ ଫଳମୂଳ
ଦସ୍ୟୁଙ୍କର ଜନନୀଗୋ,
ଶାନ୍ତି-ବିଧାୟିନି ନାଶାଥିନୀ ! (ପୁନଃ ଅଗ୍ରସରହେଲେ)
(ଅଳ୍ପ ନୀରବରହି)—କାହିଁ କାହିଁ ?
ରଜନୀ ଗୋ, ମା'ମୋର ? କାହିଁ ?
ଉଠିଲୁଣି ନାହିଁ ?
ତେବେ ବୁଝିଲି ମା !
ଦରିଦ୍ରର ବନ୍ଧୁ କେହିନାହିଁ !

ନାହିଁ କେହି ଏ ଜଗତେ—
ନଗରର ପ୍ରାନ୍ତେ ଯାଇ
ଦୀନ ଦୁଃଖେ ଝରେ ବାରି ଧାରା !
ଜାଣିଥିଲି ମୁହିଁ
ସ୍ୱାର୍ଥପରତାର ସ୍ରୋତ ବହେ ଲୋକାଳୟେ ।
ଅନାଚାର, ଅବିଚାର, କ୍ରୂର ନିଷ୍ଠୁରତା
ଖେଳି ଲୋକାଳୟେ ଚଳେ !
ନିର୍ମଳ ନିର୍ଝର ଯହିଁ
ଝରଝରେ ବହି,
ସ୍ୱର୍ଗ ସୁଧା ଦିଏ ଢାଳି ଲତିକା ପତ୍ରଣେ ।
ଫୁଟେ ଫୁଲ, ଛୁଟେ ବାସ
ପବନେ ପବନେ, ଜନହୀନ ସେ ବିଜନ ବନେ,—
ଦେବତାର ନନ୍ଦନ କାନନେ,
ନାହିଁ ସେ ସକଳ, ନାହିଁ ହିଂସା, ନାହିଁ ଦ୍ୱେଷ,—
ଜଗତର କଦର୍ଯ୍ୟ ବିଚାର ।
କିନ୍ତୁ ଆଜ ? ହୋଇଛି ସେ ଭ୍ରମ ମୋର ଦୂର ।
ବୁଝିଲି ମୁଁ
ଦରିଦ୍ରର ସକଳ ସମାନ ।
ଦରିଦ୍ରର ଲାଗି ।
ଲୋକାଳୟ, ଅରଣ୍ୟର
ନାହିଁ କିଛି ଭେଦ ।
ସମାନ ସକଳ ।

ଓହୋ, କର୍ମ୍ମ ବିଧାତା ଶ୍ରେଷ୍ଠ କିନା,
ସଙ୍କଳ୍ପ ତ ଅଧିକାର ତାର;
କିବା ଲୋକାଳୟେ କିବା ବନେ ।
ମିଛେ କିପାଁ ଦୋଷ ଦେବ କାହାକୁ ଜଗତେ ?
(ଚମକି) ଏଁ, କିସ ? ଏକି ହେଲା ?
ବାମ ଚକ୍ଷୁ ସ୍ଫୁରେ କିପାଁ ମୋର (ବାମଚକ୍ଷୁ ଚିପିଧରି)
ନଜାଣେ ଏଥିରୁ ଫଳ—
ଅଛି କିବା ଦୁଃଖ ।
ନମିଳିବ କିରେ ଜଳ ? ଦେଖେ,
ବିଧାତାର ଛଳ ।
ଅସମ୍ଭବ ନୁହେ କିଛି, (ପ୍ରସ୍ଥାନ)
(ଦଶରଥ ପ୍ରବେଶ)
ଦଶରଥ— କ୍ରମଶଃ ବଢଇ ନିଶି ।
କାହିଁ, କିଛି ପାଇଲିତ ନାହିଁ ।
ବନ୍ୟହସ୍ତୀ, ବରାହ, ଭଲ୍ଲୁକ,—
ସକଳେକି ତେଜିଲେଣି ବନ ?
ଥକିଲିଣି ଭମି ଭମି ବନେ ।
ଯାଏଁ ଦେଖେ,
ଅପେକ୍ଷା କରିବି ଏହି ବୃକ୍ଷ ଅନ୍ତରାଳେ ।
ପାଏଁ ଯଦି କିଛି ।
ସରଯୂ ନିକଟ,
ଜଳପାନ କରିବାକୁ

ଅସିପାରେ ଜନ୍ତୁ ଅବା କେହୁ ।
(ନେପଥ୍ୟେ କୁମ୍ଭରେ ଜଳ ପ୍ରବେଶ ଶବ୍ଦ)
(ହଠାତ୍ କାନଡେରି) ଉଁ ?
ବନହସ୍ତୀ ହେବ
( ପୁନଃଶବ୍ଦ ଓ ଦଶରଥ ଶୁଣିଲେ ) ହଁ ହେବ୨, ସେହି ଶବ୍ଦ !
ବନହସ୍ତୀ ଆସିଅଛି ଜଳପାନେ,
ସରଯୂ ପୁଲିନେ । (ମୁଖରୁ ଆନନ୍ଦର ଆଭାସ)
ସ୍ତବ୍ଧ ଚରିଦିଗ,
ଅନ୍ଧକାର ପୁଣି ।
ଦେଖା ଯାଉନାହିଁ କିଛି ।
ଲୁଣ୍ଠକାୟ କରି ଅଙ୍ଗ
ଶୁଭେ ମାତ୍ର ଜଳପାନ ଶବ୍ଦ ।
ଉତ୍ତମ !
ଶବ୍ଦ ଲକ୍ଷ୍ୟ କରି,
ଶବ୍ଦଭେଦ ଏଡ଼ିବ ଏଥର ।
ପରୀକ୍ଷା କରିବି ଆଜ ଶର ବଳାବଳ ।
( ଶର ଯୋଜନା ଓ ଶରତ୍ୟାଗ )
ନେପଥ୍ୟେ--ଓଃ (ବିକଳ ଚିତ୍କାର)
କେଁରେ ନିର୍ମ୍ମମ ?
କେ ହାଣିଲୁ ଶର ମୋ ଉରସେ ?
କେ ବଧିଲୁ ?
ହାୟ ! ହାୟ !

କି ହୋଇବ ଅନ୍ଧ ପିତା ମାତା ଦଶା ?
ଓ ହୋ !

ଦଶରଥ—(ଚମକି) ଏଁ, ଏ କଥ, ସର୍ବନାଶ !
କି କରିଲି ?
ପଶୁଭ୍ରମେ ବଧିଲି ମାନବେ ।
କି କଲି ମୁଁ ? ଯାଏଁ; ଯାଏଁ,
ଦେଖେଁ ବେଗେ । (ଶୀଘ୍ରପ୍ରସ୍ଥାନ)

(ଗାଇ ୨ ମାୟା ପ୍ରବେଶ)

ଭଗ୍ନ ବାଦଲ, କମ୍ପେ ସାଗର, ବରଷେ ବାରିଧାର,
ଏକାକୀ ସେ ଗୋ, ଅନ୍ଧକାରେ, ନୟନ ଶାନ୍ତି ତାର
ଏକାକୀ ସେ ଗୋ କୋଟି ଅଲୋକ,
ଅନ୍ଧ ନୟନ-କିରଣ ଝଲକ
ଥିଲାତ ସେ ଗୋ କାନନ ଧାମେ
କଲକଣ୍ଠ ଗିର ।
ହା'ରେ କଠୋର-ହୃଦୟ ନୃପତି
କରିଲୁ କେଁଯାଛ ସ୍ୱାର୍ଥ !
ମାୟା ଛଳନା; କେ କରେ କଳନା ?
ବଢ଼େଇ ବଣ ଯାର ।

——

ପଟକ୍ଷେପ

# ତୃତୀୟ—ଅଙ୍କ ।

## ୧ମ ଦୃଶ୍ୟ

ସରଯୂକୂଳ

ଜଳ ନିକଟରେ ସିନ୍ଧୁ—ଶରବିଦ୍ଧ ।

(ଦଶରଥ ପ୍ରବେଶ)

ଦଶରଥ— (ସିନ୍ଧୁକୁ ଦେଖି ଚମକି )
ଓଃ ଏ କି କଲି ?
(ପୁନଃନିକଟକୁ ଯାଇ)
ବଧିଲି ମାନବେ !
ଆହା ! ଆହା !
ବ୍ରାହ୍ମଣ ବାଳକେ—
ବିନ୍ଧିଲି ସୁତୀକ୍ଷ୍ଣ ଶର
କଷି ତୁମେ ମୁହିଁ ।
ଏ କି କଲି ?
ସୁକୁମାର କୁସୁମ ଅଙ୍ଗରେ
କଠୋର କୃପାଣ
ହାୟ ! ହାୟ ! କି କଲି ମୁଁ ?

ସିନ୍ଧୁ— (ବିକଳ ହୋଇ ) କିଏ ତୁମେ ଅସ୍ତ୍ରଧାରି !
କିଏ ତୁମେ ବଧିଲ ହେ ମୋତେ ?
କିଏ ତୁମେ ?

ଦଶରଥ— (ସ୍ୱଗତ ଚମକି) ଉଁ କି ବୋଲିବି !
କି ବୋଲି ମୁଁ ଦେବିରେ ଉତ୍ତର ?

କି କହିବି କିଏ ମୁହିଁ ।

ସିନ୍ଧୁ— (ପୂର୍ବବତ) କିଏତୁମେ ! ଓଃ କିଏତୁମେ ?

ଦଶରଥ— (ଅଳ୍ପ ଅଗ୍ରସର ହୋଇ)
ଓହୋ ! ପୁଣି ସେଇ ସ୍ୱର !
ସେହି ପ୍ରଶ୍ନ ! କିଉତ୍ତରଦେବି ? ମୃତ ନା ଜୀବିତ ମୁହିଁ !

ସିନ୍ଧୁ— ଉତ୍ତର ନଦିଅ କିପାଁ ଅସ୍ତ୍ରଧାରି ତୁମ୍ଭେ ?

ଦଶରଥ— କିଏ କିଏ ! ବ୍ରହ୍ମଘାତି ଅନ୍ଧ କୁଳାଙ୍ଗାର
ନାରକୀୟ କୀଟ,ଅପଦାର୍ଥ ଘୋର ଅପଦାର୍ଥ ।

ସିନ୍ଧୁ— କିଏ ତୁମେ ? ଆତ୍ମନିନ୍ଦା କର କିମ୍ପା ମିଛେ ।
କିଏ ତୁମେ ଅସ୍ତ୍ରଧାରି ! ପରିଚୟ ଦିଅ ।

ଦଶରଥ— ପରିଚୟ ! ଶୃଣ୍ୱାଳନ୍ତୁ ହୀନମତି ପାପୀ ଦଶରଥ !

ସିନ୍ଧୁ— କିଏ ! ଅଯୋଧ୍ୟାର ରାଜା !

ଦଶରଥ— ସୁକୁମାର ବ୍ରାହ୍ମଣ ତନୟ !
ଅଉ ରାଜା କିପାଁ ? ରାଜା ନୁହେ ।
ବ୍ରହ୍ମଘାତି—ନୀଚ, ନୀଚ ।
ନୀଚ୍ୟଦପି ନୀଚ
କ୍ରୂରମତି କଠୋର କର୍ମ୍ମ ।

ସିନ୍ଧୁ— ମହାରାଜ, ଦରିଦ୍ର ତାପସ ପୁତ୍ର ମୁହିଁ !
ଅନ୍ଧ ପିତା ମାତା ମୋର,
ସାରା ଦିନ ଉପବାସୀ ।
ନମିଳଲା କାହିଁ ଫଳ ମୂଳ ।
କ୍ଷୁଧା ନିବାରଣ ଲାଗି

ଅସିଥିଲି ନେବାକୁ ମୁଁ,
ସରଯୂର ବାରି ।
ଅତି କ୍ଷୁଧାତୁର,
ଅତି ତୃଷାତୁର ।
ରହିବ କି ଜୀବ ଯିବ ?
ଏକାଳ-ରଜନୀ କାଳେ —
ଅନ୍ଧକୋଳ ଶୂନ୍ୟ କରି,
ଆସିଥିଲି ଏଥି ।
ହୋଇ, ପଡ଼ିଛି ଏ ଘଟ, ଦେଖ,
ଆଣିଥିଲି ନେବାକୁ ମୁଁ ଜଳ !
ଚିର ବନବାସୀ ମୁହିଁ ।
ବନଫଳେ ଗଢା
ଜୀବନ ମୋହର ।
କରିନାହିଁ ଅପକାର
ଜୀବନେ କାହାର ।
ଚିରକାଳ କଷାୟ ବସନ
ଅବା ବଲ୍କଲ ପହରି
ନିଏ ଦିନ ହରି ।
ଲୋକାଳୟେ ରାଜନ୍ୟ ରାଜାର
କରିନାହିଁ ରାଜଦ୍ରୋହ କେବେ,
ନୁହେଁ ଦୋଷେ ଦୋଷୀ,
କାହିଁ ତେବେ ମହାରାଜ !

ବିନା ଦୋଷେ
ହାଣିଲେ ଏ ଶର ?
ମରିବ ମୁଁ, କ୍ଷତି ନାହିଁ କିଛି;
ଜନମ ହୋଇଲେ ଧ୍ରୁବ ମରଣ ଜଗତେ,
କିନ୍ତୁ ହାୟ !
ଅନ୍ଧ ମୋର ଜନନୀ ଜନକ ଦୁହେଁ;
ଜୀବନ ଆଲୋକ ଏକା ମୁହିଁ,
ନ ଜାଣେ କି ଅଛି ଭାଗ୍ୟେ,
ଅହରହ ପୁତ୍ର ଶୋକେ ଦହି ପଳେ ପଳେ,
ଲୋଟିବେ ଧରଣୀ,
ମରିବେ ନିଶ୍ଚୟ ।
ଥିଲି ମୁହିଁ—
ଭୀମ ମରୁ-ଜଳ-କୁଣ୍ଡ ସମ
ଅନ୍ଧ ନୟନର ତାରା,
ଜୀବନ ଆଲୋକ—
ଅନ୍ଧର ଲଉଡ଼ି
ଥିଲି ମୁହିଁ ।
ଏକମାତ୍ର ପୁତ୍ର ମୁହିଁ
ନାହିଁ ଆନ କେହି ତାହାଙ୍କର ।
ମହାରାଜ କିକହିବ ?
କି ହୋଇବ ? କି ହୋଇବ ତାଙ୍କ ଦଶା ?
ମହାରାଜ !

ମାରି ମୋତେ,
ବଧିନାହିଁ ଗୋଟିକର ଜୀବ,
ଏକବାଣେ,
କରିଛି ଶୀକାର ତିନଜଣେ ।
ବିନାଦୋଷେ ତିନପକ୍ଷୀ —
ତେଜବେ ଜୀବନ ତବଶରେ ।
ଆହା ! ହା !
ଦଶ—ଛି, ଛି, ଧିକ, ଧିକ, ଯନ୍ଦ କୁଳାଙ୍ଗାର ।—
ଦଶରଥ !
କି ଦୁଷ୍କାର୍ଯ୍ୟ କରିଲୁ ସାଧନ ?
ଏତେଦିନେ କଲୁ ବ୍ରହ୍ମହତ୍ୟା !
ହାୟ ହାୟ ! କି ହେବରେ ଦଶା !!!
ସିନ୍ଧୁ—ହାୟ ପିତା, ହାୟ ମାତା,
ଗୃହେଁ ରହିଥିବ ପଥେ ଆକୁଳ ନୟନେ,
କ୍ଷୁଧାରେ ବିକଳ ।
ତୃଷାରେ ତ ଦଶଦିଗ ମଣୁଥିବ ଶୂନ୍ୟ !
ଅହୋ ! କେଡେ ନିଷ୍ଠୁର ମୁଁ ।
ମହାପାପୀ ! ମହାପାପୀ !
ମରଣାନ୍ତେ
ନରକେ କି ନାହିଁ ସ୍ଥାନ ମୋର ?
ନ ପାରିଲି ଦୂର କରି,
ପିତା ମାତା ଦାରୁଣ ଯାତନା,

ଓହୋ ! ନପାରିଲି ଦେଇ ସେ ଦୁହିଁଙ୍କୁ
ଏକ ବିନ୍ଦୁ ଜଳ, ପିପାସାର କାଳେ ।
ହାୟ, ହାୟ,
ଅନ୍ତିମ-କାଳକଠେ
ପୂଜି ନ ପାରିଲି ବାରେ ସେ ରଙ୍ଗ ଚରଣ !
ପିତା ! ମାଗୋ !
ଓଃ ! ବଡ ବିଷମ ଯାତନା ।
ବଡ଼ କଷ୍ଟ !

ଦଶ— ମୁନିପୁତ୍ର ! କରିବ କି ଜଳପାନ ?

ସିନ୍ଧୁ— ଜଳ ପାନ !
ଓଃ !
ପିପାସାରେ ପିତା ମାତା ଅତ୍ୟନ୍ତ ଆକୁଳ,
ତହିଁ ପରେ ଜଠର ଯାତନା,—
ଉପବାସ ଦୁଃଖ !
ନ ପାରିଲି ଶାନ୍ତ କରି ସେ ଦୁହିଁଙ୍କ ଜ୍ୱାଳା ।
କି ସାଧେ ପିଇବି ଜଳ ?
ନା, ନା,
ଶୁଷ୍କ କଣ୍ଠେ ଯାଉ ପ୍ରାଣ ।
ମହାରାଜ !
ଅତ୍ୟନ୍ତ ଯାତନା, ବଢ଼େ ଜ୍ୱାଳା ।
କାହିଁ ଥିବେ ପିତା ମାତା,
ଚାରି ବିନ୍ଦୁ ଲଗି,

କିଏ ଦେବ ଜଳ ?
ହେ ପିପାସୀ !
ଦସ୍ୟୁଙ୍କର ଘାତ କଲେ,
ଅନ୍ତିମ ଶଯ୍ୟାରେ ମାଗେ କରଯୋଡ଼ି ଶିଶୁ ।
ମାଁ ଗୋ !
ଅସୀମ ଆଦରେ
କରିଥିଲୁ କୋଳ ।
ଅତିକଷ୍ଟେ ପାଳିଥିଲୁ ମୋତେ
ହେବ ବୋଲି ଅନ୍ଧ ନୟନର ଯଷ୍ଟି ।
ନା, ନା, କ୍ଷମା କର ଦୋଷ,
ଅକର୍ମ୍ମଣ୍ୟ ! ଅଧମ ମୁଁ ।
ନିତାନ୍ତ ଦୁର୍ଭାଗ୍ୟ !
ଜନନୀ ଗୋ !
ନପାରିଲି କରି ସେବା ।
ମହାରାଜ !
ଏତେ କି ନିଷ୍ଠୁର ତୁମ୍ଭେ ?
ନଜାଣକି ଜନନୀର ମାୟା ?
ରାଜା ବୋଲି,
ନ ବୁଝକି ଜନନୀର ସ୍ନେହ ?
ନିଜ ସୁତ ଶିଶୁ—
ପଲଙ୍କ ଆସନେ,
ଲଭେ ଯେଉଁ ସୁଖ;

ନାହିଁ କି ହେ ସେ ଅନାଦ
ହୀନ ଦୁଃଖି ଜନନୀର—
ଜୀର୍ଣ୍ଣ ଛିନ୍ନ ପଣନ୍ତ କାନରେ ?
ଦରିଦ୍ର କି ନଜାଣଇ,
ସନ୍ତାନ ଅଦର ?
ଦରିଦ୍ର ଜନନୀ କହେ
ନ କରେ ଚୁମ୍ବନ ଶିଶୁ ମୁଖେ—
ଭାଳ ଶୁଭାଶିଷ
ନୟନର ବାରି ?

ଦଶରଥ—(ଅଧୀରେ) ଓଃ, ଓହୋ, ସ୍ତବ୍ଧ ହୁଅ କଣ୍ଠ,
ବଦୀର୍ଣ୍ଣ ହୁଅରେ ବକ୍ଷ ।
ବିଷମ ଯନ୍ତ୍ରଣା ।

ସିନ୍ଧୁ— ବଢ଼ଇ ଯାତନା କିମ୍ପେ,
ମହାରାଜ !
ତୁମ୍ଭ ଭାଷଣର ଠାରୁ
ଏଯାତନା ଅନ୍ୟନ୍ତ ଭୀଷଣ !
ଘୋର ନିଶା ଦଶେ ମୋତେ,
ଆବୁରି ଅନ୍ଧାରେ ମିଶା ।
ଓଃ କି କରିବି ?
ଫାଟିଯାଏ ବୁକୁ !
ସହ ନପାରଇ ଆଉ
ତୃଷ୍ଣା ହିଁ ରଳିଂଲା !

ଦଶରଥ—( ସ୍ୱଗତ ) କି କରିବ ?
କ୍ରମେ କ୍ରମେ ହେଲୁ ଅବସାନ,
ଶ୍ୱାସକ୍ରମେ ଲାଗେ କ୍ଷୀଣୁ କ୍ଷୀଣ !
କରେଁ କି ଉପାୟ ?
ହେ ବିଧାତା,
ଏହୁଥିଲା ଶେଷେ ?
ବ୍ରହ୍ମହତ୍ୟା, ଶିଶୁ ହତ୍ୟା, ନରହତ୍ୟା ?
ଦିଅ ବୁଦ୍ଧି ହରି !
ଯାଉ୍ ଜୀବ ବ୍ରାହ୍ମଣ ସନ୍ତାନ ।
ସିନ୍ଧୁ— ମହାରାଜ !
ତୀକ୍ଷ୍ଣ ଶର
ମର୍ମସ୍ଥାନ କରିଛୁ କର୍ତ୍ତନ ।
ଜଳେ ଭୀମ ଜ୍ୱାଳା,
ନାହିଁ ପରିତ୍ରାଣ ।
ବଡ଼ କଷ୍ଟ, ଓଃ,
ମୂର୍ଚ୍ଛାକର ଶର
ରକ୍ଷାକର ।
ଯାଉନାହିଁ ଯାଏ ପ୍ରାଣ ।
ଓଃ ପିତା, ମାତା,
ମାଗୋ ।
ଦଶରଥ—( ସ୍ୱଗତ ) ଖୋଲିବି କପରି ଶର ?
ନାହିଁ ନାହିଁ, ହୁଏ ଅବା,

ବ୍ରହ୍ମହତ୍ୟା ଶେଷେ ।
କେଜାଣି କି ହେବ,
ଲାଗେ ଡର ।

ସିନ୍ଧୁ—(ଅଶ୍ରୁବିକଳେ)ମହାରାଜ !
ହେବନାହିଁ ବ୍ରହ୍ମହତ୍ୟା,
ନୁହେଁ ମୁଁ ବ୍ରାହ୍ମଣ ।
ବୈଶ୍ୟର ଔରସେ
ଆଉ ଶୂଦ୍ରାଣୀ ଉଦରେ
ଜନମ ମୋହର ।
ନକର ଭାବନା ।
କି କରିବ ?
ବିଧିଲିପି କେ କରିବ ଆନ ?
ଟାଣ ଶର, ବଢଇ ଯାତନା କ୍ରମେ ।
ଓଃ, ହୋ ! ଦାରୁଣ ଯାତନା ।

ଦଶରଥ—(ସଖେଦେ)ଧିକ୍, ଧିକ୍, ( ଧନୁଫିଙ୍ଗି )
ଦୂର ହୁଅ ଧନୁର୍ବାଣ ।
କି କରିଲି ?
ବିନାଶିଲି ନିରୀହ ବାଳକ ?
ଅନ୍ଧ ବୃଦ୍ଧ ଦୁଇଟି ପ୍ରାଣୀଙ୍କୁ,
ଦେଲି ସନ୍ତାନର ପୀଡା !
ପାପ ଅସ୍ତ୍ର ନଧରିବି ଆଉ
ଧିକ ଧିକ !

ସିନ୍ଧୁ— ମହାରାଜ !
ଦୈବଲିପି କେ' କରେ ଖଣ୍ଡନ ?
ତବ ଶରେ ମୃତ୍ୟୁ ମୋର ବିଧାତାର ଇଚ୍ଛା
ହୋଇଛି ପୂରଣ ଏବେ ।
ଅଜ୍ଞାନେ କରିଛ ପାପ,
କିପାଁ ତେବେ ହେଉଛ କାତର ?
କର୍ମଫଳ ଅବଶ୍ୟ ଭୁଞ୍ଜିବ ।
କର୍ମଫଳୁଁ କେହନୁହେ ଭିନ୍ନ ।
ଭାଗ୍ୟେ ମୋର ଅକାଳ ମରଣ ଲେଖା ।
ତୁମ୍ଭେ କି କରିବ ?
ତୋଳ ରଖ ଶର ଏବେ
ମର୍ମସ୍ଥାନୁ ମୋର,
ଚାଲ ଘେନ ମୋତେ
ମୋର ପିତା ମାତା ପାଶେ ।
ଏହି ବନ ପଥ ଦେଖେ,
ଚଲ ସେହି ପଥେ ।
ଥିବ ସାବଧାନ ।
ପ୍ରଥମେ ପ୍ରସନ୍ନ କର ଜନନୀ ଜନକେ,
କୌଶଳ ଆଚରି,
ଜଣାଇବ ମୋର ମୃତ୍ୟୁକଥା,
ନତୁବା ଘଟିଇ ପଡ଼େ
ବିଷମ ବିପଦ ।

ଦେବେ କାଳେ ଅଭିଶାପ[illegible]ତା ।
ଚଳ ରାଜା,
ବିଳମ୍ବ ନକର !
ଘଟିବଟି ବିଳମ୍ବେ ବିପଦ !

ଦଶରଥ— ହା ବିଧାତା,
ରକ୍ଷାକର, ରକ୍ଷାକର,
ରକ୍ଷାକର ବାଳକ ଜୀବନ ।(ଅକ୍ଷିମୁଦି ଶରକାଢ଼ିଲେ)
ଓଃ, ହର !

ସିନ୍ଧୁ— ( ଚମକି ) ଉହୁହୁ ! ଅତ୍ୟନ୍ତ ଯାତନା,
ଗଲାପ୍ରାଣ, ଯାଏଁ ରାଜା !
ପିତା, ମାତା ମୋର,
ଆହା ! ମୃତ୍ୟୁକାଳେ—
ଥରେ ଯାହା ନଦେଖିଲି ପଦ, (କରଯୋଡ଼ିଲେ)
କ୍ଷମ ଅପରାଧ ମୋର
ଅଧମ ସନ୍ତାନ !
(କ୍ଷୀଣସ୍ୱରେ) ସ୍ନେହମୟୀ ଜନନୀ ଗୋ ମୋର
ଓଃ ,ଓଃ, ହରି, ନାରାୟଣ, ଓଃ ! ( ମୃତ୍ୟୁ )

ଦଶରଥ—( ଚମକି ) ଏଇ,
ସ୍ପନ୍ଦହୀନ ହେଲାତ ଶରୀର ।
ଶେଷ ହେଲା,
ବଢ଼ିଲା କାଳରଜନୀ,
ଝଡମୁଁ ବରେ ରକ୍ତଧାର ।

ଉଲଟି ପଡ଼ିଲା ଶିଶୁ ନୟନର ତାରା ।
ହାୟ, ହାୟ, ଗଲା ଉଡ଼ି ପ୍ରାଣ ପକ୍ଷୀଏବେ ।
ଫୁଟିଅସୁଥିଲା କଳି,
ନିର୍ମମ କଠୋର ଦଶରଥ, କରିଲୁ ଦଳନ !
ନ ଜାଣେ ଏ ପାପେ,—
କି ନରକେ ବାସ ହେବ ମୋର ?
ଯାତନାର ଶାସ୍ତି ଭୋଗ ହୋଇବ ନିଶ୍ଚୟ ।
କାନୁ ଦୁଃଖ !—
ଅନ୍ଧ ତାପସ ଦମ୍ପତି, ହେଲେ ପୁତ୍ରହରା,
ବଞ୍ଚିବେ କି ସତେ ?—
ସହି ସନ୍ତାନର ଶୋକ ?
ଚାହିଁ ରହିଥିବେ ପଥେ, ଜଳ ଆଶେ;
ପାଇଁ ଥିବେ ମନେ, ଯାଇଛି ତ ପୁଅ
ଆଣିବାକୁ ଜଳ !
ଶୁଣିଲେ ସେ ମୋ ମୁଖରୁ
ଏ ବିଷମ ମୃତ୍ୟୁ,
ମହାବଜ୍ର ପଡ଼ିବ ମସ୍ତକେ ।
ଭୀମ ଲୋଳଜିହ୍ୱା କାଢି,
କୋଲାହଳ ଦାବାନଳ;
ଉଠିବ ଏ ଅରଣ୍ୟ ମଧ୍ୟରେ ।
କରେଁ କି ଉପାୟ ଏବେ ?
କାଳ ସତି ହେଲା ମୋର କାଳ ।

ନ ଶୁଣିଲ କୌଶଲ୍ୟାର କଥା,
କି ମୁଖରେ ଫେରିବି ମୁଁ ସତେ
ଅଯୋଧ୍ୟା ନଗରେ ?
କି ବୋଲିବେ ପୁରବାସୀ ?
ଯାଇଥିଲ ମୃଗୟା କାରଣେ,
ଫେରିଲ ମୁଁ କରି ଏକ
ତାପସ ତନୟ ହତ୍ୟା !
ନା, ନା ! ବରଂ ମୃତ୍ୟୁ, ବରଂ ସରଯୂର କୂଳ;
ଆତ୍ମହତ୍ୟା ! ମହାନ୍ତ୍ରହେଁ,
ପାପକର୍ମ ପରିଣାମ ଏହି । ଯାଏଁ ।(ଅଗ୍ରସରହେଲେ)
(ଥକା ହୋଇ ରହି) ଯିବ ? କାହିଁ ଯିବ ?
ରଖି ଏଥି ମୃତ ଋଷି ପୁତ୍ରେ
କପରି ବା କରିବ ମୁଁ, ପାପ ଆତ୍ମହତ୍ୟା !
ବଢିବ ଅଧିକ ପାପ ସିନା, ନା ନା, ଯାଏଁ ।
ଅନ୍ତିମ ବଚନ ଋଷି କୁମାରର, ପାଳିବି ମୁଁ ନିଶ୍ଚେ !
ଯାଏଁ, ଅନ୍ଧ ଦମ୍ପତି ନିକଟ,
ଜଣାଇବି ଧରି ପଦ ଯୁଗ,
ଦେଖେଁ, ଯଦି ପାଇପାରେଁ କ୍ଷମା ।
ତହିଁ ପରେ ପାପ ପ୍ରାଣ ଦେବି ଢାଳି
ସରଯୂ ସଲିଳେ !
ପାପ ଫଳ ମିଳିବ ପାପରେ ।
(ସିନ୍ଧୁର ମୃତ ଦେହ ଧରି ପ୍ରସ୍ଥାନ)

୨ୟ ଦୃଶ୍ୟ ।

ବନପଥ ।

ମାଧ୍ୟା— ( ଦୃଷି୨ ଗାଇ ପ୍ରବେଶ ହେଲେ ) ।

ପାଷାଣ ଭେଦୀ, କି କରୁଣ କଣ୍ଠ, କଠୋର ପ୍ରାଣେ ବାଜେ । ୦ ।
ସେ ତାନେ କମ୍ପେ ଗଗନ ଅଙ୍ଗ,
ବିଜୁଳି-ଚକ୍ର ଦେଖାଏ ରଙ୍ଗ,
ଶିଖରେ ପକ୍ଷ, ପାଦପ ସ୍ତବ୍ଧ, ଅଚଳ ଶୃଙ୍ଗ ସଜେ ।୧।
କରୁଣ କଣ୍ଠ କେବେଡ଼େ ସେ ଧୀର,
ମରମ ଜ୍ୱଳନେ କେତେ ପ୍ରଖର,
କମ୍ପେ ଭୁବନ, ହସେ ମୋ ମନନ, ହୃଦେ ଅନନ୍ଦ ସଜେ ।

ଗାଇ୨ ମାଧ୍ୟା ପ୍ରସ୍ଥାନ

---

୩ୟ ଦୃଶ୍ୟ ।

କୁଟୀର ନିକଟ ।

ଅନ୍ଧ ମୁନି ଓ ପତ୍ନୀ

ମୁନି— ତପସ୍ୱିନି !
ବିଳମ୍ବ ହୋଇଲା କିପାଁ ?
କାହିଁ ଗଲା ସିନ୍ଧୁ ?
କେତେ ଦୂର ଗଲା ?
ନମିଳଲା ଫଳ,
ଚୟନ୍ତପରି, ମିଳନ୍ତ କି ନାହିଁ ଜଳ ଅଛି ?
କେଉଁଠି ରହିଛୁ ଜନ୍ମେ ?

ପତ୍ନୀ— କାରଣତ କହୁ ଥିଲ ମୁହିଁ ।
କାର୍ଯ୍ୟ ନାହିଁ ଜଳ ଯାବେ ।
ଯେ ଜଠର ସହୁ ଥାଉରେ
ଅନାହାର ବାଧା,
ଏ ବେଶୀ ବା କଷ୍ଟ ତା'ର ଜଳର ଅଭାବେ ?
କହୁଛୁ ମୁଁ ତେବେତ ବେଳୁଁ
ଜଣାଇ ଗଲେ ପାହୁଥାନ୍ତା ରାତି ।
ମନରେ ସନ୍ଦେହ ଲାଗେ ।
ସରବରତ ବହୁ ଦୂର ନୁହେଁ ।
ବିଳମ୍ବ କାହିଁକି ତେବେ ?
ମୁନି— କାରଣ କି କହି ନାହିଁ ମୁହିଁ ?
ନ ଶୁଣିଲା, କେମାନିକା କଥା ।
କାହିଁକି ବିଳମ୍ବ ଏତେ ?
ଅନ୍ଧକାରେ ହୋଇଲା କି ପଥଭ୍ରମ ତାର,
ପତ୍ନୀ— ତୁନି ହୁଅ, ଶୁଣ, ଶୁଭେ ପଦ ଶବ୍ଦ । (କାନେଇ)
ଆସେ ପୁତ୍ର ଧନ ମୋର ଫେରି ।
ଏଇ ଶୁଣ, ନିକଟରେ ଶୁଭଇ ଶବଦ ।
ଆସ ବାବା, ଆସ ଧନ କୋଳେ ।
(ଦଶରଥ ଆସି ସିନ୍ଧୁରଶବ ଭୂତଳେ ରଖି ବହଳରେ ଅନାଇଁ ରହିଲେ)
ମୁନି— ବାବା ! କିପାଇ ବିଳମ୍ବ ଏତେ ?
ନାହିଁ ଥିଲୁ ଏତେ ବେଳେଯାଏ ?
ତୁ'ତ ଏକାଧନ ଅନ୍ଧ ନୟନରମଣି ।

କାହିଁ ଥିଲୁ ଲୁଚି ଅନ୍ଧ ଜନନୀ ଜନକେ ?
ଆଣ ବାବା ! ଦିଅ ଜଳ ।
ଲାଗେ ବଡ଼ ତୃଷା ।
ତୋ ବିଳମ୍ବ ଦେଖି, କେତେ ଦୁର୍ଭାବନା ଆସୁଥିଲା,
ବ୍ୟାକୁଳିତ ହେଉ ଥିଲେ ଜନନୀ ତୋହର
ଡାକି ଡାକି ସିନ୍ଧୁ ସିନ୍ଧୁ ବୋଲି ।

ପତ୍ନୀ— ଆସ ବାବା ! ଚୁମ୍ବି ଚନ୍ଦ୍ର ମୁଖ ତୋର
ହରେଁ ସବୁ ଦୁଃଖ ।
କୋଳେ ଆସ ପରାଣ ରତନ । ( ହାତ ବଢାଇଲେ )

ମୁନି— ବତ୍ସ ! ମଉନେ କାହିଁକି ରହୁ ?
ଓଃ ! ଧିକ ମୋତେ, ବାଧିଥିବ ପୁତ୍ରକୁ ମୋହର ।
ଲଭୁଥିବ ବଡ କଷ୍ଟ ।
ନାହିଁ ଧନ, ଆଉ ତୋତେ ଦେବୁନାହିଁ କଷ୍ଟ ।
ଆଉ ତୁ ନଯିବୁ କାହିଁ—
ଛାଡ଼ି ତୋ'ର ବୃଦ୍ଧ ପିତା ମାତାଂ କୋଳ ।
ଆସ ବାବା, କଥା କହ, ଆସ ! (ହାତବଢାଇଲେ)

ଦଶରଥ—(ବିକଳହୋଇ ସ୍ୱଗତ) ହାୟ !
କି ଦେବି ଉତ୍ତର ?
ଅନ୍ଧ ବୃଦ୍ଧ ତାପସ ଦମ୍ପତି
କିପରି ଧରିବେ ଧୈର୍ଯ୍ୟ ?
ଶୁଣିଲେ ମୋ କଣ୍ଠ ସ୍ୱର,
ନଜାଣେ କି ବଜ୍ର ଯଥି

ପଡ଼ି ଯିବ ମସ୍ତକେ ତାଙ୍କର ।

କମ୍ପେ ହୃଦ ।

କାଳ ନିଶା ତ୍ରିଗୁଣ ଅନ୍ଧାର ଦଶେ ।

(କର୍ତ୍ତବ୍ୟ ! କରେଁ କି ଉପାୟ ?

ପତ୍ନୀ— କିଆଁ ବାବା ନିରୁତ୍ତର ?

ଜଳ ପାଇ ନାହୁଁ ବୋଲି

ଲଜ୍ଜାଭରେ ନକହୁଛ କଥା ?

ନାହିଁ ବାବା, ଲୋଡ଼ା ନାହିଁ ଜଳ ।

ମେଣ୍ଟିଛି ପିପାସା ।

ଆସ ବାବା କୋଳେ ଆସ ।

ଦଶରଥ—(ବିକଳେ) ଓଃ, ତପୋଧନ, ତପୋ—(କହୁ୨ ନୀରବହେଲେ)

ମୁନି— (ଆଶ୍ଚର୍ଯ୍ୟ) ଏଁ ? ଏ ଇ ସେ ନୁହନ୍ତି ।

ଏତ ନୁହେଁ ତାର କଣ୍ଠସ୍ୱର ।

କିଆଁରେ ଛଳନା ଧନ ?

ଦଶରଥ— ନାହିଁ ମୁନି ! ସତ୍ୟ କଥା ।

ନୁହେଁ ମୁହିଁ ତବ ସୁତ ।

କ୍ଷତ୍ରିୟ ବଂଶଜ ମୁହିଁ

ଦଶରଥ ମୋର ନାମ ।

ମୁନି— କିଏ ?

ଦଶରଥ— ଅଯୋଧ୍ୟା ନିବାସୀ ତବ ଦାସ,

ଦଶରଥ ମୁହିଁ !

ମୁନି— ଅଯୋଧ୍ୟାର ରାଜା ?

ଦଶରଥ— ହଁ, ମୁନିବର !
ସେହି ଦାସ ତବ ।

ମୁନି— ମହାରାଜ ! ଦେଖିଛନ୍ତି ମୋହର ସନ୍ତାନେ ?

ଦଶରଥ—(ସ୍ୱଗତ) ହଁ ? କି କହିବି ? (ବ୍ୟସ୍ତଭାବ)
ହିଁ ଝଣ୍ଡି ଛ ହୁଅ ପାପ କହ୍ନା ।

ମୁନି— ଚିହ୍ନି ନାହିଁ? ଦେଖି ନାହିଁ
ସିନ୍ଧୁଙ୍କୁ ମୋହର ?
ତାପସ ବାଳକ ଟିଏ,
ତାପସ ସ୍ୱାଭାବ ବେଶ ।
ସରଳ ମତି ସେ ।
କରେ ଥିବ କୁମ୍ଭ
ଜାଣେ ନାହିଁ ଶୂନ୍ୟ ଅବା ପୂର୍ଣ୍ଣ ।
ଯାଇଥିଲା ଜଳଲାଗି
ସରଯୂ ପୁଳୀନେ;—
ଦେଖିଛ କି ?

ଦଶରଥ— ତପୋଧନ, କି କହିବି ?
କହିବା ପୂର୍ବରୁ ଭକ୍ଷ କର ପାପୀ ଦଶରଥେ ।

ମୁନି— କାହିଁକି ବିକଳ ନୃପ ?
କହ, କହ,
କର ମୋର ସନ୍ଦେହ ମୋଚନ ।

ଦଶରଥ— ନ ରହେ ଏ ହୀନପ୍ରାଣ, ଭକ୍ଷ କର ମୋତେ,
(ଅଲ୍ପ ନୀରବରହି) ଅସିଥିଲି ନୈଶ ମୃଗୟାର ଆଶେ—

ସରଯୂ ସଲିଳେ
ଘୋର ଅନ୍ଧକାର,
ଦୂରଶବ୍ଦ ଶୁଣି,
କରି ଭ୍ରମେ, କଲି ଲକ୍ଷ ଶବ୍ଦଭେଦୀ ବାଣ,
ପରକ୍ଷଣେ, ଓହୋ ! କି କହିବ ?
କି କହିବ ?
ଆକାଶ ପାତାଳେ ଦଣ୍ଡେ
ଉଠିଲା କି କରୁଣ କାତର ରବ,
ଚହଲିତା ଉଠିଲେ ବନପି,
ଚମକି ଉଠିଲା ପ୍ରାଣ ମୋର
ଚଳିଲି ମୁଁ ଧ୍ୱନି ଅନୁସରି ।
ଦେଖିଲି ମୁଁ,
ସୁକୁମାର ତାପସ କୁମାର ଏକ,
ଶରଘାତେ କରଇ ଚିତ୍କାର ।
ବୁଝିଲି ମୁଁ ତାହାଠାରୁ
ଭୁମ୍ବରି ନନ୍ଦନ ସ୍ନେହ ।
ମୁନେଃ, ମୁନେଃ !
ଆଉ ନୁହେଁ ।
ନା ନା,
କ୍ଷମା କର ମୋତେ ।
ନପାରିବ ଆଉ କହି କହି ।

ପତ୍ନୀ— କି କହୁଛ ରଜା ? ଏଁ ? ( ଉଠି ପଡ଼ିଲେ )

ମୁନି— କି କହିଲ ? କି କହୁଛ ? (ଉତ୍କଣ୍ଠିତ ଭାବରେ ଅର୍ଦ୍ଧୋତ୍ଥାନ)
ରାଜା !
ବୁଝିତ ପାରିଲି ନାହିଁ !

ଦଶରଥ— ପାପ ଶରୀ ସାଥେ,
ନାହିଁ ଆଉ ସେ ସର୍ବସ୍ୱ ଧନ;—
ତୁମ୍ଭ ହୃଦୟ ରତନ !

ପତ୍ନୀ— ଏଁ ? କିସ ?
ନାହିଁ ଅନ୍ଧ ମୋର ?
ସିନ୍ଧୁରେ ? ଏକି ହେଲା ?
ବାପରେ ! କାହିଁ ଗଲୁ ? ସିନ୍ଧୁରେ !
ସିନ୍ଧୁରେ, କାହିଁଗଲୁ ବାପ ! (ମୂର୍ଛା)

ଦଶରଥ—(ସ୍ୱଗତ) କହୁଥିଲା ସିନ୍ଧୁ ଯାହା,
ସଟିବଇ ପ୍ରକୃତରେ ତାହା ?
ଏକ ବାଣେ ଦୁଇ ପକ୍ଷୀ ?
ହାୟ, ହାୟ; ପାପ ଦଶରଥ !
( ମୁନିପତ୍ନୀଙ୍କୁ ଭାଳପଦରେ ବସିଲେ )

ମୁନି— ଏକି କଲ ରାଜା !
କାଢି ନେଲ ଅନ୍ଧର ନୟନ ?
କେତେ ଯତ୍ନେ ଗଢିଥିଲି
ପିଞ୍ଜର ମୁଁ ଏକା !
ଶୂନ୍ୟ କଲ ?
( [illegible] ସିନ୍ଧୁରେ ? ବାପରେ ? କାହିଁଗଲୁ ଛାଡ଼ି ?

ବାଅ ।
ତୁମ୍ଭ ଚନ୍ଦ୍ର ମୁଖ ଚାହିଁ
ଭୁଲେଁ ସବୁ ବାଧା ।
ବାଅ ଆଣି କୋଳେ ଥରେ ।

ଦଶରଥ— ଜନନୀ ଗୋ,
ଆଣିଛି ମୁଁ ଜଳ ଯେ ତୁମ୍ଭର ।

ପତ୍ନୀ— କାହିଁ ? କାହିଁ ? (ଅଣ୍ଡାଳି ସିନ୍ଧୁକୁ ଧରି)
ବାଅ, କୋଳେ ବାଅ । (ଚମକି)
ଏଁ, ଏ କିସ ଗୋ ?
ଶୀତଳ ତ ଦେହ ।
ନାହିଁ ଚଳନ ଶବଦ ।
ନିଧି ମୋର !
ଡାକ ବାରେ,
ଡାକ ବାରେ ଚନ୍ଦ୍ରମୁଖେ ମାଆ ମାଆ ବୋଲି ।
ଏକି ହେଲା ମୋର ଧନ ?
କାହିଁ ମୋର ଅଞ୍ଚଳର ନିଧି !
କାହିଁ ମୋର ଅନ୍ଧୁଣୀ ନୟନ ?
କାହିଁ ଗଲୁ ପରାଣର ପ୍ରାଣ ?
କାହିଁ ବାବା !
ଯାଇ ଥିଲୁ ପଶ୍ଚ ଜଳ ଆଣି ?
ବିଧାତା !
ଜୀବନର ଯାବତ ତପସ୍ୟା ବଦଳରେ

ଢଳିଥିଲି ଶଯ୍ୟା କରି
ନିଦ୍ରାକରେ ଶକତି ଏକାଳେ,
ଦେଖି ଥାଏଁ ଥରେ
ମୋର ଚନ୍ଦ୍ରମୁଖ-ଛବି ।
ବାବାରେ ! ବାବାରେ ! (ମୁଖଚୁମ୍ବନ)
ମୁକ୍ତା— (ସଚେତ ହୋଇ) ଓଃ !
ବଡ଼ ଜ୍ୱାଳା, ବାବାରେ !
କାହିଁ ଛାଡ଼ି ଗଲୁ ରଙ୍କନିଧି !
ନ ନେଲୁ ସଙ୍ଗରେ ?
ଅକାଳେ କେ ଶିରେ ତୋର
ହାଣିଲା ରେ ବଜ୍ର ?
ଫୁଟି ଆସୁ ଥିଲୁ ଫୁଲ;
ପଡ଼ିଲୁ ଝାଉଁଳି
କେଉଁ କୀଟ ଦଂଶନରେ ?
କରିଛୁ କି କୋପ ବାବା,
ଲୋଟୁଛୁ ଭୂତଳେ ?
ବାବା !
ଯେତେ ବାରେ ସ୍ନେହ ମଧୁ କଣ୍ଠେ ଡେକ ।
ଡେକ ସୁଧା ଢାଳିଦେ' ଶ୍ରବଣେ ।
ଅନ୍ଧର ସମ୍ବଳ !
କିଏ ଆଉ ଚଳାଇବ ପଥେ ?
କେ ଦେବ ଆହାର ମୁଖେ ?—

ତ୍ରାଣ ସେହୁ ଶରେ ଦସ୍ୟାକରି
ଏହୁ ହୁଇ ଜଣେ ।
ଭଜ ଜଣେ ଏକଠାରେ ଲଭିବା ମରଣ ।
କାର୍ଯ୍ୟ ନାହିଁ ପୁତ୍ରହନ୍ତା—
ଏବେକି ପସ୍ତାଣେ ।

ଦଶରଥ— ଶାନ୍ତ ହୁଅ ଜନନୀ ଗୋ !
ଦୈବ ଦୁର୍ବୀପାକେ,
ହୋଇଅଛି ପୁତ୍ରହତ୍ୟା !
ଏବେ ଘେନ ମୋ ବଚନ ।
ଜନକ ଜନନୀ ସମ ବେନିଙ୍କେ ମଣି,
ଅହରହ ପଦ ପ୍ରାନ୍ତେ ଥାଇ,
ପୂଜିବି ଚରଣ ଯୁଗ ।
ନଫେରିବି ଆଉ ଅଯୋଧ୍ୟାକୁ ।
ଆଣି ଦେବି ବନଫଳ କ୍ଷୁଧା କାଳେ (ତବ,)
ତୃଷା ହେଲେ ଜଳ ।
ଅରଣ୍ୟର ସୁକୋମଳ ପତ୍ର ଲତା ଘେନି,
ପାତିବି ଆସନ ।
ତୁମ୍ଭେ ମୋର ମାତା, ପିତା ମୋର—
ଅନ୍ଧ ବୃଦ୍ଧ ମୁନି!
ପୁତ୍ର ସମ ମଣି ମୋତେ
କ୍ଷମା କର ଦାସ ଅପରାଧ ।

ମୁନି— (ଅଶ୍ରୁ ପୋଛି) ମାହାରାଜ !

ନଷ୍ଟୁଅଇ ବନ୍ଦୀ ପ୍ରାଣ ଯୋଦ୍ଧ ।
ନାହିଁ ଜୀବେ ପ୍ରୟୋଜନ—
ଏକ ସିନ୍ଧୁ ବିନେ ।
ତୁମ୍ଭେ କି ବୁଝିବ ଦଶରଥ;
ପୁତ୍ର-ଶୋକ ବାଧା ?
ତୁମେ କି ବୁଝିବ ?—
କିପରି ଜଳୁଛି ଏହି ବେନ ବୃଦ୍ଧ ଅଙ୍ଗ,
ସିନ୍ଧୁ ବନ୍ଧନରେ ।
ତୁମ୍ଭେ ଏକା ଏ ଦୁଃଖର କର୍ତ୍ତା
ରାଜା !
କି ବୁଝିବ ତୁମ୍ଭେ ?
ଶୁଣ ରାଜା !
ଦେଲି ଅଭିଶାପ ! (ଦଶରଥ ଚମକି ପଡ଼ିଲେ)

ଦଶରଥ (ସ୍ୱଗତ)— ଓଃ, ଫଳିଲା କି ସିନ୍ଧୁବାକ୍ୟ ଶେଷେ ?

ମୁନି— ଶୁଣ ରାଜା !
ବାକ୍ୟ ମୋର ନହେବ ଖଣ୍ଡନ ।
ଯେ ଦାରୁଣ ଶୋକାନଳେ,—
ଦହୁଅଛ ମୋତେ;—
ପୁତ୍ର ଶୋକ ଦେଇଅଛ ରାଜା,
ସେହି ଶୋକ ଲଭିବ ଆପଣେ ।
ସତ୍ୟ, ସତ୍ୟ, ସତ୍ୟ ।
ବୁଝିବ ଏ ଭୀଷଣ ଯାତନା ତେବେ ।

ଏକା ତୁମ୍ଭେ ନୁହଁ ,
ଜାଣିବ ଜଗତ ।
ତେବେ ଅଜ୍ଞ—
କାହାଇକୁ କେହି
ଏ ଜଗତେ;
ଦେବ ନାହିଁ ପୁତ୍ର ଶୋକ—
ଅନନ୍ତ ଯନ୍ତ୍ରଣା ! (ଅଶ୍ରୁ ମୁଛନ)

ଦଶରଥ—(କର ଯୋଡ଼ି) ହେ, ତାପସ !
ପୁତ୍ରହୀନ ଦଶରଥ ।
କାହିଁ ତେବେ ପୁତ୍ର ଶୋକ-
ଶାପ ଦେଲେ ତାକୁ ?
କର ଭସ୍ମ,
ଏ ପାପ ଶରୀରେ !
ନାହିଁ ମୋର ପ୍ରୟୋଜନ ।
ପାପ ପ୍ରାଣ ହେଉ ପ୍ରାୟଶ୍ଚିତ ।

ମୁନି— ଧରି ଥାଅ ତାହା !
ତୁର ନୃପେ !
କଲୁ ଛଳା !
ତେବେ ବୁଝିବ କିପରି ?-
ପୁତ୍ର ଶୋକ ଦୁଃଖ ?
ନା, ନା;
ହେବ ପୁତ୍ର,

ସୁମନ୍ତ୍ରାନ;—ଶ୍ରୀକୃଷ୍ଣ ମୋର !
ମାଗ ଅକାଳେ ଲଭିବ ତୁମ୍ଭେ
ପୁତ୍ର ଶୋକ ଦୁଃଖ
ମୋହ ପରି ।
ତେବେ ଯାଇ ବୁଝିବ ଯାତନା ।
ଚେତିଲେ ବନ,
(ଅକାଙ୍କ୍ଷିତ ନିନ୍ଦନ—ନିରତ—
ଚପଳ ଅନ୍ଧ ମୋର
ରହି ଥିବ—
ଆକାଶର ନୀଳ ଘନ ପାଶରେ ।
କାନ୍ଦଇ, କାନ୍ଦୁଛି, କାନ୍ଦିବ ବହୁତ
ବଡ଼ ବାଧା ପ୍ରଜା; ବଡ଼ ବାଧା ।
ଏ ବାଧା ହୋଇବ ଶାନ୍ତ
ଚେତିଲେ ଦହନେ ମୋର,
ଦେଖି ତୁମ୍ଭ ସୁତ ଶୋକ ଦୁଃଖ ।

ଦଶରଥ—(ଚମକି) ଓଃ,
ବିଧି ଲୀଳା !
ଲଭିଲି ମୁଁ ଶାପେ ବର,
ଆଶ୍ଚର୍ଯ୍ୟ ଏ ମାୟା ।

ମୁନି— ରାଜା !
ବିଳମ୍ବ ନକର ଆଜ୍,
ଚଳ ଶୀଘ୍ର ।

ସରଯୂର କୂଳେ;
ଯହିଁ ବଧିଛ ସିନ୍ଧୁକୁ !
ଜାଲ ରହିଁ ମନ୍ଦାକିନୀ ।
ପୁତ୍ର ଶବ ସଙ୍ଗେ
ପିତା ମାତା ତେଜିବୁଁ ଜୀବନ ।
ଦିଅ ଆଜ୍ଞା !
ଦିଅ ମୋ ସିନ୍ଧୁକୁ ମୋର କୋଳେ,
ଜଳ, ଶୀଘ୍ର, ( ହସ୍ତ ପ୍ରସାରଣ )

ଦଶରଥ— ମୁନି ! ଗୁରେ !

ମୁନି— ଦ୍ୱିରୁକ୍ତି ନାଇଁ, ଜଳ.
ଏକକାଳେ ସ୍ୱର୍ଗ—ମର୍ତ୍ତ୍ୟ
ହୋଇବ ପ୍ରଳୟ ।
କରେ ପୁତ୍ର ଶୋକ !
ବିଳମ୍ବ ନକର,
ଅନ୍ଧ ତପସ୍ୱିନୀ,
ଦୁଃଖିନୀଟି ହେଉ ଅବସାନ, ( ପତ୍ନୀକର ବଢାଇଲେ
ଓ ଲୁହ ପୋଛିଲେ)

ଦଶରଥ-(କାନ୍ଦିଲେ) ଓହୋ ! କି ଭୀଷଣ ଦୃଶ୍ୟ ! (ସିନ୍ଧୁର ମୃତଦେହ ମୁନିଙ୍କୁ ଦେଲେ ଓ ମୁନି ସିନ୍ଧୁର ମୃତଦେହ ଧରି ସକଳେ ପ୍ରସ୍ଥାନ)



୪ର୍ଥ ଦୃଶ୍ୟ

ବନସ୍ଥଳୀ—ପଥ ।

ମାୟା— ଗାଇ ଆସୁଥିଲେ—

ଗୀତ

ଏ ଭବ ରଙ୍ଗନାଟ ମାୟାରି ଖେଳାଘର ।
କାନ୍ଦୁଥିଲେ ଜଣେ ମୁହିଁ
ହୁଏ ଯାତନା ବଢ଼ାଇ
ଦୁଃଖୀ ନୟନ ନୀରେ ଆସଇ ହସ ମୋର
କଟିଫୁଲ ଛୁଣ୍ଡାଇ ହସେ ମୁଁ ଦର ଦର ।

—✲—

(ନାରଦ ଆସି ପ୍ରଣାମ କଲେ)

ନାରଦ— ଜନନୀ ଗୋ,
ସନ୍ତାନ ତୋହର;
କି ଦେଇ ପୂଜିବ ପଦକଞ୍ଜ ?
କୃତଜ୍ଞତା-ମାନସ-ପ୍ରସୂନ
ଭେଟି ଦେଇ ଶ୍ରୀଚରଣେ—
କରେ ନତବଦନ;
ଅନୁଗ୍ରହେ ତବ
ସର୍ବ ଦେବ
ଅତ୍ୟନ୍ତ କୃତଜ୍ଞ ।
ପେଷିଛନ୍ତି ମୋତେ
ତବ ପାଶେ ।

ଏତେଦିନ ପରେ
ଦୂର ଦିଗ୍‌ବଳୟ ପାରେ
ଦିଶେ ଏକ କ୍ଷୀଣ ଆଶା ରେଖା !
କେତେବାକୁ ଚାହିଁଥିଲୁ
ଦୁର୍ଦ୍ଦାନ୍ତ-ମରଣ !
ଆସ ମା ଜନନି !
ଚାହିଁଛନ୍ତି ଦେବେ ତବ ଆଗମନ ପଥ ।

ମାଣ୍ଡୁ— ବତ୍ସ !
ପ୍ରୀତ ହେଲି ଅତି !
ଆୟୁଷ କାହାରି ନାହିଁ
ଲଙ୍ଘିବ ନିୟତି ।
ଯାହା କାର୍ଯ୍ୟ କରିବ ସେ ।
ନିମିତ୍ତ ସକଳେ ଅତ୍ର !
ଚଳ ବତ୍ସ !
କାହିଁଛନ୍ତି ଦେବେ ?

ନାରଦ— ଆସନ୍ତୁ ଜନନି !

(ପଥ ଦେଖାଇ ନେଇଗଲେ)

---

୫ମ ଦୃଶ୍ୟ ।

( ସରଯୂତୀର ଅରଣ୍ୟ )

(ଅଳ୍ପ ପଣ୍ଡ ପକ୍ଷୀ ବସିଥିଲେ, ଦଶରଥ ଦଣ୍ଡାୟମାନ, ଓ ପାର୍ଶ୍ୱେ ସିନ୍ଧୁର ଶବ ।)

ମୁନି— ତାପସି,
ଯେତେବେଳେ ଯାଏ ଆସ

ସୁଲକ୍ଷ୍ମା

ଛାର ପିଣ୍ଡେ ପ୍ରାଣ,
ବଞ୍ଚିବ ଏ ଶୋକ ।
ଆସ, ଆସ ଫେରି,
ଜାଳ ମହା ଅଗ୍ନି,
ଜ୍ୱଳନ୍ତ ଅନଳେ;
ମହାଶୋକ କରିବା ନିର୍ବାଣ ।
ନାହିଁ ଆଉ ଅନ୍ୟ ପରିତ୍ରାଣ ।
( ଅଙ୍ଗ ବଙ୍କଲେ ) ସିନ୍ଧୁ, ହାୟ ବନ୍ଧୁ,
ନଖିବିଲୁ ଅରେ
କି ହୋଇବ
ତୋ'ର ବୃଦ୍ଧ ପିତା ମାତା ଦଶା !
ହାୟ, ହାୟ, ( ଅଶ୍ରୁ ମୁଞ୍ଚନ )
ମୃତ ପତ୍ନୀ-(ଦୀର୍ଘଶ୍ୱାସସହ) ଆଉ ନାହିଁ,
କାନ୍ଦିବାକୁ ହେବନାହିଁ ଅଛି ।
ପାଷାଣ ପ୍ରାଣର କଷ୍ଟ,
ପ୍ରାଣ ସଙ୍ଗେ ଯିବ ।
ପାପ ପୃଥିବୀର ପ୍ରାଣ
ଯନ୍ତ୍ରଣା କେବଳ;
ଛାଡ଼ି ଶୋକ କୁଣ୍ଠିତ ଗତା,
ଥିଲେ ପ୍ରାଣ,
ଥିବ ପୁତ୍ର ଶୋକ ।
ଆସ ମୃତ୍ୟୁ,

ଛଡ଼ି ଯିଣ ଭୁଲିଯିବା ଶୋକ ।
ପୃଥିବୀରେ ଏ ପୃଥିବୀ ଜୀବ—
ପୁତ୍ରଶୋକ ଶାନ୍ତ ନହୋଇବ,
ନାହିଁ ତାର ସ୍ଥାନ ।
ପାଷାଣେ ପାଷାଣେ,
ଦାରୁଣ ସର୍ଷଣେ ବର୍ଷେ ଅଗ୍ନି,
ଜୀବ ମାନେ
ହୁଏ ଶୋକ ପ୍ରପୀଡ଼ିତ ।
ତା'ର ଫଳ—
ଏହି ପୁତ୍ର ଶୋକ ଦୁଃଖ ।
ଯିବ ପୁତ୍ର ଶୋକ
ଜଳି ଯିବ,
ସର୍ବଗ୍ରାସୀ ଚିତା-ଅଗ୍ନି —
ଲହ ଲହ କରିଲ ତାଣ୍ଡବେ ।
ଅନନ୍ତ ଯନ୍ତ୍ରଣା, ଅନ୍ତର ବେଦନା,
ପୃଥିବୀର ଅଣୁରେ ମିଶିବ ।
ପାର୍ଥିବ ଏ ଶୋକ
ରହିଯିବ ପୃଥିବୀରେ ।
ଯିବା ଶାନ୍ତି ଧାମେ ;
ନାହିଁ ଯହିଁ ଦୁଃଖ ଶୋକ ଜ୍ୱାଳା ।
ଯହିଁ ବସିଥିବ ଧନ,
ଅମ୍ଭ ଯିବା ପଥେ ।

କେତେ ସ୍ନେହ କରିଥିଲେଁ,
ନାଶ ନ କରିବେବା ତାକୁ ?
ନା, ନା,
ଗୁଳ ଛୁଟ,
ବିଳମ୍ବ ନ ସହେ,
(ଅଳ୍ପ ଉପରକୁ ଚାହିଁ) ରହ ଧନ !
ଶାନ୍ତ ସୁଧା-ମଖା ତୋର ଭଙ୍ଗୀମା ବଦନକ,
ଚୁମ୍ବିବୁ ଏ ଅଙ୍କ ପିତା ମାତା ।
ନବ ଜୀବ ଉଠିବ ପୁଲକି !
ରହ ଧନ !
ଶୁନ !
ଦେଖ, ଦେଖ,
ଫିଟିଛୁ ହେ ଏତେଦିନେ,
ଅଧର ପଟଳ !
ପ୍ରତ୍ୟକ୍ଷ ଦିଶଇ ମୋତେ
ଡାକେ ସିନ୍ଧୁ 'ମାଆ' ବୋଲି;
ନକଳ କାନ୍ଦରେ !
ଶୁଖିଛି ଚନ୍ଦ୍ରମା ମୁଖ,
ଝାଉଁଳିଛି ଛବି
କମଳ ଅତ୍ୟନ୍ତ !
ଶ୍ରାନ୍ତ କ୍ଲାନ୍ତ ମୁଖଁ ଉଡେ ଝୁଲି
ଧର ଧୈର୍ଯ୍ୟଧନ !

ନାହିଁରେ ବିଳମ୍ବ
ଯିବ, ଯିବ ବାବା !
ଏକା ନୁହେଁ
ଚାଲିଯିବ ସଙ୍ଗେ ତୋ ଜନନୀ
ଯାଉ ନିଜ ଧାମ—
ନିରବଧି ବସି ବସି ସେହି ଶାନ୍ତି ଧାମେ
ଚୁମ୍ବିବ ତୋ ମୁଖ ପୁଅ,
ପୁଲକେ ଉଠିବ ପାପପ୍ରାଣ ।

ଦଶରଥ— ଉଃ,
ପୁତ୍ର ଶୋକ ! ( ମୁଖରେ ବସନ ଦେଲେ )

ପତ୍ନୀ— ତାପସ,
କାହିଁ, କାହିଁ, ଅଗ୍ନି ?
କାହିଁ ଅଗ୍ନି ?
ଅଛି କି ହେ ପ୍ରାଣର ମମତା ?
ରଖିଛ କି ପାପ ପ୍ରାଣେ ସ୍ନେହ ?
ଲୁଟିନାହିଁ ? ଭୁଲିନାହିଁ ?
ଛାଡ଼ିନାହିଁ ପାପଧରା ମାୟା ?
ଭୁଲିଲ ସିନ୍ଧୁକୁ ?—
ଅଞ୍ଚଳେ ପୁରଇ ଯାକୁ
କି ଜଗତ ମଣୁଥିଲ ଶୂନ୍ୟ !
ଯାଏଁ ତେବେ ଏକାକିନୀ ( ଉଠିଲେ )
ଥାଅ ସେହି ପ୍ରାଣ ତୁମ୍ଭେ

ଏହି କି ହେ ତୁମ୍ଭ ପୁତ୍ରଶୋକ ?
କଠୋର ପୁରୁଷ ! ( ସନ୍ଧାନୋଦ୍ୟତକାଳେ ମୂର୍ଚ୍ଛା )

ମୁନି— ପକ୍ଷି ! କାହିଁ ଯିବ ଛାଡ଼ି
ମୃତ ପ୍ରାଣେ ?
ମନେକର ଅଛି ବୋଲି
ପ୍ରାଣର ମମତା ?
ନା, ନା,
ଘନଘୋର କୃଷ୍ଣ ମେଘେ
କ୍ଷଣିକ ବିଜୁଳି ରେଖା—
କଟାଇବ ଅନ୍ଧକାର କିନା !
ଦଶରଥ ! ମହାରାଜ,
ବିଳମ୍ବ ନ ସହେ !
କାଳ କ୍ଷିପ୍ର ଗତି
କର ପ୍ରତିକାର, କର ଉପକାର,
ରାଜା ! ଶେଷ ଉପକାର,
ଶେଷ ଭିକ୍ଷା, ବୋଲେ ଯେବେ ସିନ୍ଧୁକୁ ମୋହର
ପକ୍ଷୀରୁଁ ତଡ଼ାରେ, କର ଉପକାର ରାଜା !

ଦଶରଥ–(ସବିନୟେ) ମୁନି,
ରକ୍ଷ ଏ ଦାସର ଅନୁରୋଧ ।
କର କୃପା !
ଅଗ୍ନିନାଶ ନକର ତାପସ !
ହେବ ଦୁର୍ବିପାକେ

ଛନ୍ଦବାର ଯା ହେଲା;
ନଯିବ ଅଯୋଧ୍ୟା, କଲି ସତ୍ୟ ।
ଆଜ୍ଞା ତବ ଶିରେ ଘେନି,
ବୁଲି ବନେ ବନେ
ଅହରହ କରୁଥିବ ସେବା ।
ଦୟାକର । ( ପଦଧାରଣ )
ମୁନି— (ଉଠାଇ) ମହାରାଜ !
ବୃଥା ତବ ଅନୁରୋଧ ।
ପୁତ୍ର ଯଥା, ପିତା ତଥା ।
ପୁତ୍ର-ହରା ପ୍ରାଣେ କିବା ପ୍ରୟୋଜନ ?
ନପାରିବ ଦଣ୍ଡେ ତିଷ୍ଠି
ପାପ ପୃଥିବୀରେ ।
ନାହିଁ ଲଜ୍ଜା !
ଶୁଣ ମୋ ବଚନ ।
ଜାଳ ଚିତା,
କର ଉପକାର ।
ଅନ୍ୟ କଥା ନ ଶୁଣିବ ଆଉ ।
ଯାଅ, ଆଣ କାଷ୍ଠ ।
କର ଉପକାର, କର ଉପକାର,
ଯାଅ ରାଜା !
ଶେଷ ଏ ପ୍ରାର୍ଥନା;
ଯାଅ ରାଜା ! ଯାଅ ।

ଦଶରଥ— ଓଃ, ଧିକ୍ ପୁତ୍ର ସ୍ନେହ । (ପ୍ରସ୍ଥାନ)
(ପତ୍ନୀ ଉଠି)

ପତ୍ନୀ—(ସ୍ୱପ୍ନୋତ୍ଥିତା ପ୍ରାୟ) ଏଁ, କାହିଁ ? କାହିଁ ଗଲ ପୁତ୍ର ?
ମୋତେ ଛାଡ଼ି ଦେଇ ଗଲ ?
ଛାଡ଼ ମୋତେ ପଶିଲ ଅନଳେ ?
ଥିବ; କାହିଁ ଅଛ ସରଯୂର ବାରି ?
କାହିଁ ? ନାହିଁ ଦୃଷ୍ଟି ଶକ୍ତି ।
ହେ ବିଧାତା !
କହ୍ନଦଅ—
ଯାହିଁ ସେହି ଚିତାନଳ
କ୍ଷମ୍ୟା ମରଣ ଉପାୟ ମୋର ।

ମୁନି— ପତ୍ନି ! ମୂର୍ଚ୍ଛାରେ କି ନହେଲା ମରଣ ?
ବେଶ୍, ଉତ୍ତମ,
ସଙ୍ଗ ହୋଇ ଯିବା ।
ନାହିଁ ଭୟ,
ପତି ପତ୍ନୀ ଲଭିବା ନିସ୍ତାର ।
କାହିଁ ? ଦଶରଥ ? କାହିଁ ?
ବିଳମ୍ବ କୁଅଇ କପାଁ ?
ରାଜା ! ରାଜା !
( ଦଶରଥ ପ୍ରବେଶ ଓ ଚିତା ପ୍ରସ୍ତୁତକରଣ )

ଦଶରଥ—(କାନ୍ଦି) କହ ପ୍ରଭୋ !

ପତ୍ନୀ— କାହିଁ ? ଏପର୍ଯ୍ୟନ୍ତ

ନର୍ଦ୍ଦି ଶିଖ୍ଯ ଚିତା ?
ଅବନେତ୍ର–ଅଶ୍ରୁଦଗ୍ଧ ଭେଦ
ଲହ ଲହ ଚିତାନଳ ଅଛି ?—
କାହିଁ, ନର୍ଦ୍ଦି ଶିଖ୍ଯ ଏତେ ବେଳ ଧାଇଁ ?
ଜାଳ ଭସ୍ମ । ଜାଳ । ଜାଳ ।
( ଚିତା ଜ୍ଵଳନ )
ଏଇ ଯେ ଜଳନ୍ତା ଚିତା
ଚକ୍ଷୁ ଚର୍ମ୍ମ ଆବରଣୀ ଭେଦ
ଦେଖ ଦେଖା ଆଲୋକର ରେଖା ।
ମୃଚ୍ଛା କଲମ୍ବ କର୍ପାଇଁ ଆଜ ?
ମୃଚ୍ଛା— ଦିଶେ ମୋତେ ଅଳ୍ପ କେତେ
ଚିତାନଳ ଅଗ୍ନି ।
ଆହା କେତେ ଶାନ୍ତି !
କେତେ ସେ ଉଜ୍ଜ୍ୱଳ !
ଜ୍ଵଳ ଚିତା,
ସର୍ବ ଗ୍ରାସୀ ତେଜେ ।
ମାୟା ସ୍ନେହ ମମତା ସହିତେ
ଗ୍ରାସ କର ଏପାପ ସଂସାର ।
ଜ୍ଵଳ, ଆହୁରି ତେଜରେ ଜଳ ।
ଶକ୍ତି— ମହାଶୂନ୍ୟ, ମହାସ୍ଵନ,
କାହିଁ ସିନ୍ଧୁ ?
ଦିଅ ଦିଅ ।



କରି କୋଳ,
ପଶିବ ଜନନେ ।
ଦିଅ, ଦିଅ ! ( ହାତ ହଟାଇଲେ )
ଚୁମ୍ବି ଥାଏଁ ସୁଧା ମୁଖ ଥରେ ।
ଆସ ନାଥ, ଆସ ପଭ,
ଆସ ଦେବ !
ପାର୍ଥୀବ ସମ୍ବନ୍ଧ ଛାଡ଼ି
ଯିବା ଶାନ୍ତି ଧାମେ ।

ମୁନି— ମହାରାଜ !
ଆଣ ମୋ ସିନ୍ଧୁକୁ
ଦିଅ ତୋଳେ ।

ଦଶରଥ— (କାନ୍ଦି) ତପୋଧନ !—

ମୁନି— ନା, ନୁହେଁ ଖାଲି ଅନ୍ଧ ।
ଥିଲି ଅନ୍ଧ,
ବଧିର ଏକ୍ଷଣି ।
ନଶୁଣଇ କିଛି,
ନଶୁଣିବି କିଛି ।
ଦିଅ ରାଜା !
ଆଣ ମୋ ସିନ୍ଧୁକୁ ।
ଦିଅନାହିଁ ମରଣରେ ବାଧା ।

ପତ୍ନୀ— ( ହାତ ବଢାଇଲେ )
କାହିଁ ରାଜା ଆଣ,

ଅଣ, ଦଅ ମୋତେ
ତନୟେ ମୋହର ।

ଦଶରଥ·– ( ମୃତ ପୁତ୍ରନେଇ କୋଳରେ ଦେଲେ )
ହା ପିଶାଚ ! ଦଶରଥ !
କି କରିଲୁ ?
ଏକ ବାଣେ କରିଲୁ ସଂହାର
ତିନ ପ୍ରାଣୀ ?
ଏ ପାପ ତୋ ନହେବ ଖ୍ୟାଳିତ
ଅନନ୍ତ ନରକେ ନାହିଁ ବାସ ।

ମୁନି— ଧର ଧୈର୍ଯ୍ୟ ରାଜା !
ପୃଥିବୀରେ ନାହିଁ ତୁମ୍ଭ ସ୍ୱର୍ଗ,
ସତ୍ୟ !
ମାତ୍ର ନହେବ ନରକ-ଗାମୀ ।
ଭଗବାନ ହରି,
ପୁତ୍ର ରୂପେ, ରାମ ରୂପେ; ତବ ଗୃହେ
ହୋଇ ଅବତାର,
ପିତା ବୋଲି ଡାକିବେ ତୁମ୍ଭଙ୍କୁ
ବୈକୁଣ୍ଠେ ଲଭିବ ସ୍ଥାନ ।
ଯାଅ ରାଜା !
ଧର ଧୈର୍ଯ୍ୟ ।
କହ ରାଜା ! ଶେଷ କାଳେ–
'ହରିନାମ' 'ରାମନାମ' କର ଉଚ୍ଚାରଣ ।



ଦଶରଥ— (କାନ୍ଦି) ହରେ ରାମ; ରାମ, ରାମ, ରାମରାମ ହରେ ହରେ,
ମୁନି— ହରେ ରାମ, ରାମ ରାମ, ରାମ ରାମ ହରେ ହରେ,
ପତ୍ନୀ— ପତି ! ଦେବ !
ଧର ହାତ ମୋର,
ଶୋକରଜନି ପ୍ରଭାତ ହୋଇଲା ।
ହାଁ ସିନ୍ଧୁ, ସିନ୍ଧୁରେ ! ( ଚୁମ୍ବନ )

( ସିନ୍ଧୁକୁ କୋଳରେ ନେଇ ଦୁହେଁ ଚିତାରେ ପ୍ରବେଶ । )

ଦଶରଥ— ଓଃ ! ଓଃ ! ( ମୁଖରେ ଅଞ୍ଚଳ ପ୍ରଦାନ )
କଲି ମୁଁ ଆଜ ?
ସର୍ବନାଶ,
ଶୂନ୍ୟ ଏ ଭୁବନ ।

ଚିତାମଧ୍ୟରୁ ମୁନି ଓ ମୁନିପତ୍ନୀ }— ଯାଅ ରାଜା !
କର ହରି ନାମ,
ରାମ ! ରାମ !
ରାମ ! ରାମ !

ଦଶରଥ—(ଅତି ବ୍ୟାକୁଳରେ) ରାମ ! ରାମ !
ରାମ ! ରାମ ! ( ମୂର୍ଚ୍ଛା )

———*———

(ଯବନିକା)

ସମାପ୍ତ ।

——•*•○•*•——

 

ଆଉ

# ଖଣ୍ଡିଏ ନୂଆ ବହି ।

ଶ୍ରୀ କାଳୀଚରଣ ପଟ୍ଟନାୟକଙ୍କ

ପ୍ରଣୀତ

# "ବନଫୁଲ"

ପ୍ରକାଶିତ ହୋଇଅଛି—ମୂଲ୍ୟ ଆଠଅଣା

ବନଫୁଲ—କେତେଗୁଡ଼ିଏ ସୁନ୍ଦର ଗଳ୍ପର ସମାବେଶ । ବହିଟି ଭାଷ୍ୟରେ ପଦେ କଥାଃ—ଆରମ୍ଭକଲେ ଶେଷ କରି ନପାରି ରହିପାରିବେ ନାହିଁ । ଭାଷା ସରଳ, ଗଳ୍ପଗୁଡ଼ିକ ଉପନ୍ୟାସ ଢଙ୍ଗରେ ଗଢ଼ା, ହର୍ଷ, ବିଷାଦ, ଶିକ୍ଷା;—ଏକାଧାରେ । ସତ୍ୟ, ମିଥ୍ୟା ଥରେ ଓଡ଼ିଆ ଭାଇମାନେ ଅନୁଭବରେ ଆଣିବେ କି ?

ପ୍ରାପ୍ତିସ୍ଥାନ—
ଚନ୍ଦ୍ରୋଦୟ ପ୍ରେସ ଓ ଅରୁଣୋଦୟ ପ୍ରେସ,
ବାଲୁବଜାର,
[illegible] ଚାନ୍ଦନୀଚୌକ, କଟକ ।



